# ଭାରତୀୟ ନାରୀ

## ଦ୍ୱିତୀୟ ଭାଗ



ଡାଇମଣ୍ଡ ପବ୍ଲିଶର୍ସ

# ଭାରତୀୟ ନାରୀ

( ସଚିତ୍ର )

ଦ୍ୱିତୀୟ ଭାଗ


ଲେଖକ

ପ୍ରଶାନ୍ତ କୁମାର ମିଶ୍ର



ପ୍ରଥମ ସଂସ୍କରଣ

୧୯୮୩

ପ୍ରକାଶକ

ଡାଇମଣ୍ଡ ପବ୍ଲିଶର୍ସ

ଲେଙ୍କା ବଜାର, କଟକ—୧

ପ୍ରାପ୍ତିସ୍ଥାନ—କଟକ ଟ୍ରେଡ଼ିଂ କମ୍ପାନି

ବାଲୁବଜାର, କଟକ—୨

ମୂଲ୍ୟ ଟ ୨-୨୫     ଦୁଇ ଟଙ୍କା ପଚିଶ ପଇସା

# ସୂଚୀପତ୍ର

| ବିଷୟ | ପୃଷ୍ଠା |
| --- | --- |


—:୦:—

ମୁଦ୍ରାକର—ହରେକୃଷ୍ଣ ବେହେରା

ମହାଲକ୍ଷ୍ମୀ ପ୍ରେସ, [illegible] ବଜାର, କଟକ-୨

## ଦ୍ୱିତୀୟ ଭାଗ

# ଲକ୍ଷ୍ମୀ ବାଈ

ଉତ୍ତର ପ୍ରଦେଶରେ ଝାନ୍‌ସି ରାଜ୍ୟ । ଆଜକୁ ଶହେ ବର୍ଷ ପୂର୍ବେ ଗଙ୍ଗାଧର ରାଓ ବୋଲି ଜଣେ ମରହଟ୍ଟା ଝାନ୍‌ସିର ରାଜା ଥିଲେ । ଝାନ୍‌ସି ଯମୁନା ନଦୀର ଦକ୍ଷିଣ ପଟରେ ଅଛି ।

ଯେତେବେଳେ ଗଙ୍ଗାଧର ରାଓ ଝାନ୍‌ସିର ରାଜା ଥିଲେ, ପୁନାର ପେଶବାଙ୍କର ମୋରୋପନ୍ତ ନାମରେ ଜଣେ ବଡ଼ କର୍ମଚାରୀ ଥିଲେ । ମୋରୋପନ୍ତଙ୍କର ମନୁବାଈ ନାମରେ ଏକ ସୁନ୍ଦରୀ ଓ ବୁଦ୍ଧିମତୀ କନ୍ୟା ଥିଲେ ।

ମନୁବାଈ ବଡ଼ ହେଲେ । ୧୮୪୮ ରେ ମୋରୋପନ୍ତ ତାଙ୍କୁ ଝାନ୍‌ସିର ରାଜା ଗଙ୍ଗାଧର ରାଓଙ୍କ ସଙ୍ଗେ ବିବାହ କରାଇ ଦେଲେ । ତା' ପରେ ମନୁଙ୍କ ନାମ ହେଲା ଲକ୍ଷ୍ମୀବାଈ ।

ବିବାହର ଦୁଇବର୍ଷ ପରେ ଲକ୍ଷ୍ମୀବାଈଙ୍କର ଏକ ପୁତ୍ର ହେଲା କିନ୍ତୁ ପୁତ୍ରଟି କିଛି ଦିନ ପରେ ମରିଗଲା । ତାକୁ ଝୁରି ଝୁରି ରାଜା ଗଙ୍ଗାଧର ରାଓ ପ୍ରାଣତ୍ୟାଗ କଲେ । ମୃତ୍ୟୁ ପୂର୍ବରୁ ସେ ଜଣକୁ ପୋଷ୍ୟ ପୁତ୍ର କରିଥିଲେ ।

୧୮୫୪ ରେ ଭାରତର ଗଭର୍ଣ୍ଣର ଜେନେରାଲ ଲର୍ଡ଼ ଡେଲହାଉସି ଗଙ୍ଗାଧରଙ୍କ ପୋଷ୍ୟ ପୁତ୍ରଙ୍କୁ ଝାନ୍‌ସିର ରାଜା ବୋଲି ସ୍ୱୀକାର କଲେ ନାହିଁ । ସେ କହିଲେ, ପୋଷ୍ୟ ପୁତ୍ର ରାଜ୍ୟ ପାଇ ପାରିବ ନାହିଁ । ସେ ଲକ୍ଷ୍ମୀବାଈଙ୍କୁ ମଧ୍ୟ ରାଜ୍ୟ ଦେଲେ ନାହିଁ ।

ଝାନ୍ସି ଇଂରେଜ ଅଧିନକୁ ଚାଲିଗଲା । ଇଂରେଜ କର୍ମଚାରୀ ଉକ୍ତ ଝାନ୍ସି ଶାସନ କଲେ । ରାଣୀ ମାସକୁ ପାଞ୍ଚ ହଜାର ଟଙ୍କା ବୃତ୍ତି ରୂପେ ପାଇଲେ ।

ଗଙ୍ଗାଧର ମରିଯିବା ପରେ ଲକ୍ଷ୍ମୀବାଈ ପୋଷ୍ୟ ପୁତ୍ରକୁ ରାଜା କରି ତା' ପକ୍ଷରୁ ରାଜ୍ୟ ଚଳାଉଥିଲେ । ଡେଲହାଉସି ତାଙ୍କ ହାତରୁ ଶାସନ କ୍ଷମତା ଛଡ଼ାଇ ନେଲେ ଏବଂ ଝାନ୍ସି ଇଂରେଜମାନଙ୍କ ପ୍ରତ୍ୟକ୍ଷ ଶାସନକୁ ଚାଲିଗଲା ବୋଲି ଘୋଷଣା କଲେ । ଲକ୍ଷ୍ମୀବାଈ ଏହାର ଘୋର ପ୍ରତିବାଦ କଲେ । ତାଙ୍କର ଯେତେ ପ୍ରତିବାଦ ଡେଲହାଉସି କିଛି ଶୁଣିଲେ ନାହିଁ । ଲକ୍ଷ୍ମୀବାଈ ଏଥିରେ ବିରକ୍ତ ହେଲେ । ସେ ବ୍ୟାକୁଳ ହୋଇ ଝାନ୍ସିରୁ ସେମାନଙ୍କୁ ତଡ଼ିବା ପାଇଁ ନାନା ଚେଷ୍ଟା କଲେ । ସେ ସୈନିକ ସଂଖ୍ୟା ବଢ଼ାଇଲେ । ସେଥିପାଇଁ ତ ଟଙ୍କାର ଦରକାର । ତାଙ୍କୁ ଦିଆ ଯାଉଥିବା ମାସିକ ବୃତ୍ତି ପାଞ୍ଚ ହଜାର ଟଙ୍କାରେ ସେ କଣ ବା' କରିବେ । ସେ ବିଶେଷ ଅର୍ଥାଭାବରେ ପଡ଼ିଲେ ।

ଲକ୍ଷ୍ମୀବାଈ ଅତି ବୁଦ୍ଧିମତୀ ଥିଲେ । ସେ ଯେ ଇଂରେଜ ସରକାରର ବିପକ୍ଷରେ ଅଛନ୍ତି, ସେମାନଙ୍କୁ ଝାନ୍ସିରୁ ତଡ଼ିବାକୁ ଚାହୁଁଛନ୍ତି, ଏ କଥା ବାହାରକୁ କିଛି ଜଣାଇ ଦେଲେ ନାହିଁ । ସେ ଇଂରେଜମାନଙ୍କ ପ୍ରତି କପଟ ବନ୍ଧୁତା ଦେଖାଇଲେ । ଗୋରା ସ୍ତ୍ରୀ ମାନଙ୍କ ସଙ୍ଗେ ସଦ୍‌ଭାବ ରଖିଲେ । ଲକ୍ଷ୍ମୀବାଈ ବୁଝିଥିଲେ, ଇଂରେଜମାନଙ୍କ ଅତ୍ୟାଚାରରେ ଝାନ୍ସିର ପ୍ରଜାମାନେ ଉତ୍ୟକ୍ତ ହେଲେ ତାଙ୍କର ସୁବିଧା ହେବ । ରାଣୀ ଗୋରା ଶାସକମାନଙ୍କ ସଙ୍ଗେ କପଟ ବନ୍ଧୁତା ରଖିଲେ, ଶାସକମାନେ ନିର୍ଭୟରେ ଅତ୍ୟାଚାର କରିବେ ।

ଇଂରେଜମାନେ ଯେତେବେଳେ ଝାନ୍ସୀ ହାତକୁ ନେଲେ, ରାଜ୍ୟରେ ବହୁତ ନୂଆ ନୂଆ କଥା ହେଲା । ସେମାନେ ହିନ୍ଦୁ ପ୍ରଜାଙ୍କର ମନ ମଧ୍ୟରେ ଥିବା ଧର୍ମ ଚିନ୍ତା କଥା ବୁଝି ପାରିଲେ ନାହିଁ । ରାଜ୍ୟରେ ଗୋବଧ ହେଲା, ସବୁଆଡ଼େ କଂସେଇ ଖାନା ବସିଲା । ହିନ୍ଦୁ ପ୍ରଜାମାନଙ୍କୁ ତାହା ବଡ଼ ଅପ୍ରୀତିକର ବୋଧ ହେଲା । ସେମାନେ ବ୍ୟତିବ୍ୟସ୍ତ ହେଲେ ।

ଲକ୍ଷ୍ମୀବାଈଙ୍କର ନିଜର ସୈନ୍ୟ ଥିଲେ । ସେମାନଙ୍କୁ ଯଥେଷ୍ଟ ଦରମା ଦେବାକୁ ପଡ଼ୁଥିଲା । ତା ଛଡ଼ା ରାଣୀ ପ୍ରତିଦିନ ଦୁଃଖୀ, ଭିକାରି, ବ୍ରାହ୍ମଣ ଓ ସାଧୁମାନଙ୍କୁ ଦାନ କରୁଥିଲେ । ସେଥିପାଇଁ ଯଥେଷ୍ଟ ଅର୍ଥର ପ୍ରୟୋଜନ ଥିଲା । ଇଂରେଜମାନେ ଦେଉଥିବା ବୃତ୍ତିରୁ ଏ ସବୁ କାମ କରିବା ସମ୍ଭବ ହେଉ ନ ଥିଲା । ତେଣୁ ସେ ଋଣ କରିବାକୁ ବାଧ୍ୟ ହେଉଥିଲେ ଦିନକୁ ଦିନ ଋଣ ଭାର ବଢ଼ି ଚାଲିଲା ।

ଇଂରେଜମାନେ ଭାରତର ସବୁଆଡ଼େ ଅନେକ ରାଜ୍ୟ ନେଲେ । ଯେତେ ରାଜା ଅପୁତ୍ରିକ ହୋଇ ମଲେ, ସମସ୍ତଙ୍କର ରାଜ୍ୟ, ବୃତ୍ତି ପଦବୀ ଛଡ଼ାଇ ନେଲେ । ରେଳ ଚଳାଚଳ କରାଇଲେ । ସୈନ୍ୟମାନଙ୍କୁ ଯୁଦ୍ଧ ବେଳେ ରେଳ ବା ଜାହାଜରେ ଅନ୍ୟସ୍ଥାନକୁ ଯିବାକୁ ବାଧ୍ୟ କଲେ । ରେଳ ଜାହାଜରେ ଯିବାବେଳେ ସୈନିକ ମାନେ ଖିଆପିଆ କରି ପାରିଲେ ନାହିଁ । ସେଥିରେ ତାଙ୍କର ଜାତି ଯିବାର ଭୟ ରହିଲା । ସେମାନେ ରେଳ ଜାହାଜରେ ଯିବାକୁ ରାଜି ହେଲେ ନାହିଁ ।

ଇଂରେଜମାନେ ସେତେବେଳେ ଗୋଟିଏ ନୂଆ ପ୍ରକାର ବନ୍ଧୁକ ତିଆରି କରିଥିଲେ । ସେହି ବନ୍ଧୁକର ଗୁଳିରେ ଗୋରୁ ଓ ଘୁଷୁରି

ଚର୍ବି ଲଗିଥିଲା ତାକୁ ଦାନ୍ତରେ କାଟିବାକୁ ପଡୁଥିଲା । ସୈନିକ ମାନେ ତାହା କରିବାକୁ ରାଜି ହେଲେ ନାହିଁ ।

ଯେଉଁ ସୈନିକମାନେ ରେଳ ଜାହାଜରେ ଯିବାକୁ ଏବଂ ନୂଆ ପ୍ରକାର ବନ୍ଧୁକ ରାଇଫଲ ଚଳାଇବାକୁ ନାରାଜ ହେଲେ ସେମାନଙ୍କୁ ଚାକିରୀରୁ ବାହାର କରି ଦିଆ ହେଲା । ରାଜ୍ୟର ଚାରିଆଡ଼େ ଗୋଳ ହଣ୍ଡା ଚାଲିଲା । ଏଥିରେ ଲୋକେ ବିଦ୍ରୋହ କଲେ । ସୈନିକ ମାନେ ସରକାର ବିରୁଦ୍ଧରେ ଯୁଦ୍ଧ କରିବାକୁ ବାହାରିଲେ ।

ଯେତେ ରାଜା ରାଜ୍ୟ ବୃତ୍ତି ଓ ପଦବୀ ହରାଇ ଥିଲେ ସମସ୍ତେ ଏକଜୁଟ ହୋଇ ସୈନିକମାନଙ୍କୁ ମଣାଇ ସେମାନଙ୍କର ନେତା ହେଲେ । ଭାରତର ଚାରିଆଡ଼େ ଲୋକେ ଯୁଦ୍ଧ କରି ଇଂରେଜ ମାନଙ୍କୁ ଭାରତରୁ ତଡ଼ି ଦେବେ ବୋଲି ତିଆରି ହୋଇ ଗଲେ ।

୧୮୫୭ ରେ ଯୁଦ୍ଧ ଆରମ୍ଭ ହୋଇଗଲା । ରାଜା, ରାଜପୁତ୍ର ସୈନିକ, ପ୍ରଜା ସମସ୍ତେ ଯୁଦ୍ଧରେ ଯୋଗ ଦେଲେ । ଭାରତକୁ ସ୍ୱାଧୀନ କରିବା ନିମନ୍ତେ ଗୋଟିଏ ବଡ଼ ଆନ୍ଦୋଳନ ଚାଲିଲା । ଇଂରେଜ ମାନଙ୍କ ଅବସ୍ଥା ବିଷମ ହେଲା । ଲକ୍ଷ୍ମୀବାଈ ଏହି ସୁଯୋଗର ଅପେକ୍ଷାରେ ଥିଲେ । ସେ ଝାନ୍‌ସିର ନେତ୍ରୀ ହେଲେ । ଝାନ୍‌ସିକୁ ସ୍ୱାଧୀନ ରାଜ୍ୟ ବୋଲି ଘୋଷଣା କଲେ । ପ୍ରଜାମାନେ ତାଙ୍କୁ ହୃଦୟର ସହିତ ସମର୍ଥନ କଲେ । ପ୍ରଜାମାନେ ଶତ ସହସ୍ର ସଂଖ୍ୟାରେ ତାଙ୍କ ସୈନିକ ଦଳରେ ଯୋଗ ଦେଲେ ।

ଏହି ସମୟରେ ପୁନାର ପେଶଓ୍ୱା ଦ୍ୱିତୀୟ ବାଜିରାଓ ନାନା ସାହେବଙ୍କୁ ପୋଷ୍ୟପୁତ୍ର କରିଥିଲେ । ଇଂରେଜମାନେ ନାନା ସାହେବଙ୍କୁ ପୁନାରାଜ୍ୟ ଦେଲେ ନାହିଁ । ନାନାସାହେବ ବୃତ୍ତି ପାଇ

ବିଦୁର ନଗରରେ ବାସ କରୁଥିଲେ । ତାନ୍ତିଆ ଟୋପି ନାମରେ ଜଣେ ମରହଟ୍ଟା ବ୍ରାହ୍ମଣ ନାନା ସାହେବଙ୍କର ପ୍ରଧାନ ପୃଷ୍ଠ ପୋଷାକ ଥିଲେ । ତାନ୍ତିଆ ଅତି ବୁଦ୍ଧିମାନ ଓ ଚତୁର ଥିଲେ । ସେ ଗୋଆଲିୟରର କୋଡ଼ିଏ ହଜାର ସୈନିକ ସଂଗ୍ରହ କରି ସେମାନଙ୍କର ନେତା ହୋଇ ଥିଲେ । ସେ ନାନା-ସାହେବଙ୍କୁ ସାହାଯ୍ୟ କଲେ ଏବଂ ଭୀଷଣ ଯୁଦ୍ଧର ଉଦ୍ୟୋଗ କଲେ । ତାଙ୍କ ଚେଷ୍ଟାରେ ଇଂରେଜମାନେ କାନପୁରରୁ ତଡ଼ା ଖାଇଲେ ତାନ୍ତିଆ ଟୋପି ନିଜର ସୈନ୍ୟମାନଙ୍କୁ ନେଇ ଝାନ୍‌ସିର ରାଣୀ ଲକ୍ଷ୍ମୀବାଈଙ୍କ ସଙ୍ଗେ ଯୋଗ ଦେଲେ । ତାନ୍ତିଆଙ୍କର ସାହାଯ୍ୟ ପାଇବାରୁ ଲକ୍ଷ୍ମୀବାଈଙ୍କର ବୁଦ୍ଧି ଓ ସୈନ୍ୟବଳ ବଢ଼ିଗଲା । ଏକ ପ୍ରଚଣ୍ଡ କ୍ଷେତ୍ର ହୋଇ ସେ ଠିଆ ହେଲେ । ଜଣାଗଲା, ଝାନ୍‌ସିରେ ଇଂରେଜର ସମସ୍ତ ଆଶା ଭରସା ଲୋପ ପାଇଛି । ଲକ୍ଷ୍ମୀବାଈ ୧୮୫୮ ଏପ୍ରିଲ ୩ ତାରିଖ ଯାଏ ଅପ୍ରତିହତ ଭାବରେ ଶାସନ କାର୍ଯ୍ୟ ଚଳାଇଲେ ।

ଇଂରେଜ ପକ୍ଷର ଜଣେ ପ୍ରବୀଣ ସେନାପତି ଥିଲେ । ତାଙ୍କ ନାମ ହ୍ୟୁରୋଜ । ସେ ଧୀର ସ୍ଥିର ଭାବରେ ବୁନ୍ଦେଲ ଖଣ୍ଡରେ ଯୁଦ୍ଧ ଚଳାଉଥିଲେ ଏବଂ କ୍ରମେ ପୁଣି ବୁନ୍ଦେଲ ଖଣ୍ଡକୁ ଇଂରେଜ ମାନଙ୍କ ହାତକୁ ଦେବାକୁ ସମର୍ଥ ହୋଇଥିଲେ ।

ହ୍ୟୁରୋଜ ବେତବା ନଦୀ କୂଳରେ ତାନ୍ତିଆ ଟୋପିଙ୍କୁ ପରାସ୍ତ କଲେ । ତାନ୍ତିଆ ପଳାୟନ କଲେ । ୧୮୫୮ ଏପ୍ରିଲ ୩ ତାରିଖରେ ରୋଜ ଝାନ୍‌ସି ଅବରୋଧ କଲେ । ଲକ୍ଷ୍ମୀବାଈ ପୁରୁଷ ବେଶରେ ଭୀଷଣ ଯୁଦ୍ଧ କଲେ । ଇଂରେଜମାନେ ତାଙ୍କର ଯୁଦ୍ଧ କୌଶଳ ଦେଖି ସ୍ତମ୍ଭିଆ ହୋଇ ଗଲେ । ଶେଷରେ ରାଣୀ ଆଉ ପାରିଲେ ନାହିଁ । ଇଂରେଜ ମାନେ ଦୁର୍ଗ ଉପରେ ତୋପ ମାଡ଼ ଚଳାଇ ଦୁର୍ଗକୁ ହାତ

କଲେ ଏବଂ ଦୁର୍ଗ ଭିତରେ ପଶିଗଲେ । ଲକ୍ଷ୍ମୀବାଈ ଏପ୍ରିଲ ୪ ତାରିଖ ଦିନ ରାତରେ ଦୁର୍ଗ ଛାଡ଼ି ଦେଲେ । କିନ୍ତୁ ଇଂରେଜମାନଙ୍କ ପାଖରେ ଆତ୍ମ ସମର୍ପଣ ନ କରି କାଲ୍ପୀକୁ ପ୍ରସ୍ଥାନ କଲେ । ଇଂରେଜମାନେ ତାଙ୍କ ପିଛା ଧରି ମଇ ୨୨ ତାରିଖରେ କାଲ୍ପୀ ମଧ୍ୟ ଅଧିକାର କଲେ ।

ଏତେ ପରାଜୟ ପାଇ ମଧ୍ୟ ଲକ୍ଷ୍ମୀବାଈଙ୍କର ବଳ ସାହସ ବା ଉତ୍ସାହ ଊଣା ହୋଇ ନ ଥାଏ । ସେ ତାନ୍ତିଆଙ୍କ ସାଙ୍ଗରେ ଧରି ଗୋଆଲିୟର ଅଧିକାର କଲେ ଓ ସିନ୍ଧିଆଙ୍କୁ ଗୋଆଲିୟରରୁ ତଡ଼ି ଦେଲେ । ସିନ୍ଧିଆ ଆଗ୍ରାକୁ ପଳାୟନ କରି ସେଠାରେ ଇଂରେଜ-ମାନଙ୍କ ଆଶ୍ରୟରେ ରହିଲେ । ଲକ୍ଷ୍ମୀବାଈ ଓ ତାନ୍ତିଆ ଗୋଆ-ଲିୟରରେ ନାନାସାହେବଙ୍କୁ ପେଶବା ବୋଲି ଘୋଷଣା କଲେ ।

ହ୍ୟୁରୋଜଙ୍କର ଘୋର ଚିନ୍ତା ହେଲା । ଏକଣି ମରହଟ୍ଟାମାନେ ଯଦି ଲକ୍ଷ୍ମୀବାଈଙ୍କ ସାଙ୍ଗେ ମିଶି ଯାଆନ୍ତି । ଅବସ୍ଥା ଆହୁରି ଅସମ୍ଭାଳ ହେବ । ସିନ୍ଧିଆ ତ ଯୁଦ୍ଧରେ ଯୋଗ ଦେଇ ନ ଥିଲେ । ସେ ପଳାଇ ଯିବା ପରେ ଓ ନାନା ସାହେବ ପେଶୱା ବୋଲି ଘୋଷିତ ହେବା ପରେ ସିନ୍ଧିଆଙ୍କ ଲୋକମାନେ ଲକ୍ଷ୍ମୀବାଈ ଓ ତାନ୍ତିଆଙ୍କ ଦଳରେ ଯୋଗ ଦେବେ ।

ସେ କଥା ନ ହେଉଣୁ ହ୍ୟୁରୋଜ ଗୋଆଲିୟର ଆକ୍ରମଣ କଲେ । ରାଣୀ ଲକ୍ଷ୍ମୀବାଈ ପୁରୁଷ ବେଶରେ ଘୋଡ଼ା ଉପରେ ବସି ପ୍ରାଣମୂର୍ଚ୍ଛା ଯୁଦ୍ଧ ଚଳାଇଲେ । ମୋରାର ଓ କୋଟା ଦୁଇଟି ଜାଗାରେ ଯୁଦ୍ଧ ହେଲା । କିନ୍ତୁ ଭାଗ୍ୟଲକ୍ଷ୍ମୀ ଲକ୍ଷ୍ମୀବାଈଙ୍କୁ ଈର୍ଷା କରୁଥିଲେ । ଉଭୟ ଯୁଦ୍ଧରେ ସେ ପରାସ୍ତ ହେଲେ । ୧୮୫୮ ଜୁନ୍ ୧୭ ତାରିଖରେ ଜଣେ ଇଂରେଜ ସୈନିକ ତାଙ୍କୁ ଖଣ୍ଡା ଚୋଟରେ ଆଘାତ କରି

ଘୋଡ଼ା ଉପରୁ ଖସାଇ ପକାଇଲେ । ଭୀଷଣ ଆଘାତ ପାଇ ଲକ୍ଷ୍ମୀବାଈ ବୁଝି ପାରିଲେ, ଅଳ୍ପ ସମୟ ମଧ୍ୟରେ ତାଙ୍କର ପ୍ରାଣ ଯିବ ।



ଏହି ସମୟରେ ପୁରୀର ଜଣେ ପଣ୍ଡା ଋଷିଖୁଣ୍ଟିଆ ଲକ୍ଷ୍ମୀବାଈଙ୍କ ଦୀକ୍ଷା ଗୁରୁ ରୂପ ବରାବର ତାଙ୍କ ସାଙ୍ଗେ ରହି ସବୁ ସମୟରେ ତାଙ୍କୁ ପରାମର୍ଶ ଦେଉଥିଲେ । ନିଜ ଶେଷ ମୁହୂର୍ତ୍ତ ଉପସ୍ଥିତ ହେବା ଜାଣି ଲକ୍ଷ୍ମୀବାଈ ତାଙ୍କୁ କହିଲେ, "ମୋତେ ଗଙ୍ଗା ଜଳରେ ସ୍ନାନ କରାଇ ଦିଅନ୍ତୁ ।

ଋଷି ଗଙ୍ଗା ଜଳରେ ତାଙ୍କୁ ସ୍ନାନ କରାଇ ଦେଲେ । ଅଳ୍ପ ସମୟ ପରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ଋଷି ଲୁଚି ଲୁଚି ନେପାଳକୁ ପଳାୟନ କଲେ । ମୋରୋପନ୍ତ ଧରା ହୋଇ ଫାଶୀ ଦଣ୍ଡ ପାଇଲେ । ତାନ୍ତିଆ ଟୋପି ଏହା ପୂର୍ବରୁ ଲକ୍ଷ୍ମୀବାଈଙ୍କୁ ଛାଡ଼ିବାକୁ

ବାଧ୍ୟ ହୋଇଥିଲେ । ଗୋରା ସୈନ୍ୟମାନେ ତାଙ୍କ ପଛରେ ଗୋଡ଼ାଇବାରୁ ସେ ବହୁତ ସ୍ଥାନକୁ ଯାଇ ଆଶ୍ରୟ ନେଇଥିଲେ । ଶେଷରେ ସିନ୍ଧିଆଙ୍କର ଜଣେ ସାମନ୍ତ ମାନସିଂହ ତାଙ୍କୁ ଧରାଇ ଦେଇଥିଲେ । ତାନ୍ତିଆ ଫାଶୀ କାଠରେ ପ୍ରାଣ ହରାଇଲେ ।

ସେପଟୁ । ନାନା ସାହେବ ନେପାଳକୁ ପଳାୟନ କରିଥିଲେ । ସେଠାରେ ତାଙ୍କର ପରିଣାମ କଣ ହୋଇଥିଲା ତାହା କାହାରିକୁ ଜଣା ନାହିଁ ।

୧୮୫୭ ର ସ୍ୱାଧୀନତା ଯୁଦ୍ଧରେ ଭାରତର ଅନେକ ନେତା ଯୋଗ ଦେଇଥିଲେ । ଝାର ରାଣୀ ଲକ୍ଷ୍ମୀବାଈ ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲେ । ଅତୁଳ ଧୈର୍ଯ୍ୟ, ସାହସ, ସତ୍ୱସ୍ଫୂର୍ତ୍ତା ଓ ବୁଦ୍ଧିବଳରେ ସେ ଦୀର୍ଘକାଳ ପର୍ଯ୍ୟନ୍ତ ମହାପରାକ୍ରମୀ ଇଂରେଜ ସରକାରଙ୍କୁ ଅଥୟ କରି ପକାଇଥିଲେ । ଏ ବୟସରେ ପୁରୁଷମାନେ ମଧ୍ୟ ତାଙ୍କର ସମକକ୍ଷ ନ ଥିଲେ । ଲକ୍ଷ୍ମୀବାଈଙ୍କ ସାମର୍ଥ୍ୟ ଦେଖି ଇଂରେଜମାନେ ପ୍ରମାଦ ଗଣୁଥିଲେ । ଇଂରେଜ ସେନାପତି ତାଙ୍କ ବୀରତ୍ୱର ଭୂୟସୀ ପ୍ରଶଂସା କରିଛନ୍ତି । ଭାରତର ସ୍ୱାଧୀନତା ଯୁଦ୍ଧର ଇତିହାସରେ ଲକ୍ଷ୍ମୀବାଈଙ୍କ ନାମ ଚିରକାଳ ଅମର ଅକ୍ଷରରେ ଲିପିବଦ୍ଧ ହୋଇ ରହିବ ।

—୦—

# କୃଷ୍ଣା କୁମାରୀ

୧୭୭୮ ଖ୍ରୀଷ୍ଟାବ୍ଦରେ ଓଡ଼ୋପୁରରେ ଭୀମସିଂହ ବୋଲି ଜଣେ ରଜା ଥିଲେ । ତାଙ୍କର କୃଷ୍ଣା କୁମାରୀ ବୋଲି ମେନକା ପରି ସୁନ୍ଦରୀ ଏକ କନ୍ୟା ଥିଲା ।

ରାଣା ଭୀମସିଂହ କୃଷ୍ଣା କୁମାରୀଙ୍କୁ ଯୋଧପୁର ରାଜାଙ୍କ ସଙ୍ଗେ ବିବାହ କରାଇବେ ବୋଲି ଠିକ୍ କରିଥିଲେ ; କିନ୍ତୁ ସେ ରାଜା ବିବାହ ପୂର୍ବରୁ ମରିଯିବାରୁ ନିଜ କନ୍ୟାକୁ ଜୟପୁର ରାଜାଙ୍କୁ ଦେବେ ବୋଲି ରାଣା ନିଶ୍ଚିତ କଲେ । ଏତେ ବେଳେ ଯୋଧପୁରର ପରବର୍ତ୍ତୀ ରାଜା ମାନସିଂହ କହିଲେ, "ଯେ ଯୋଧପୁରର ରାଜା ହେବ, ସେ କୃଷ୍ଣା କୁମାରୀଙ୍କୁ ବିବାହ କରିବ । ରାଣା ଯୋଧପୁର ରାଜାଙ୍କୁ ଝିଅ ଦେବେ ବୋଲି ପ୍ରତିଶ୍ରୁତ ହୋଇ ଅଛନ୍ତି ।"

ରାଣା କୃଷ୍ଣାକୁମାରୀଙ୍କ ବିବାହ ପ୍ରସ୍ତାବ ସ୍ଥଗିତ ରଖିଲେ । ଏଥିରେ ଜୟପୁରର ରାଜା ଜଗତସିଂହ କ୍ରୁଦ୍ଧ ହେଲେ । ସେ ସୈନ୍ୟ ସଂଗ୍ରହ କରି ଓଡ଼ୋପୁର ଆକ୍ରମଣ କଲେ ।

ସେଥିରେ ରାଗିଯାଇ ମାନସିଂହ ମଧ୍ୟ ଜଗତସିଂହଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଅଗ୍ରସର ହେଲେ । ଜଣାଗଲା ରାଜପୁତନାରେ ରକ୍ତର ସୁଅ ବହିବ ।

ଏହି ସମୟରେ ଅମୀର ଖାଁ ବୋଲି ଜଣେ ପିଣ୍ଡାରୀ ସର୍ଦ୍ଦାର ଥିଲେ । ତାଙ୍କ ପେଶା ଥିଲା, ସବୁଆଡ଼େ ଦେଶ ଲୁଣ୍ଠନ କରିବା ।

କୌଣସି ପ୍ରକାରେ ସୁଖ ହେଲେ, ସେ ଗୋଟିଏ ପକ୍ଷକୁ ସାହାଯ୍ୟ କରିବାର ଛଳନା କରି ପ୍ରଜାଙ୍କ ଧନ ଲୁଣ୍ଠନରେ ଲାଗନ୍ତି । ଧନ ପାଇଁ ଲୋକଙ୍କ ଜୀବନ ନିଅନ୍ତି, ଗାଁ ଗଣ୍ଡା ସରଦାର ଘୋଡ଼ି ଜାଳି ଛାରଖାର କରନ୍ତି ।

ସେହି ଅମୀର ଖାଁ ମାନସିଂହଙ୍କୁ ସାହାଯ୍ୟ କଲେ । ସେ କହିଲେ । "ରାଣା କୃଷ୍ଣାକୁମାରୀଙ୍କୁ ମାନସିଂହଙ୍କୁ ଅର୍ପଣ କରନ୍ତୁ । ନ ହେଲେ, ସେ ମିବାର ଛାରଖାର କରିବେ ।

ଅମୀର ଖାଁ ଜଣେ ଦୁର୍ବୃତ୍ତ । ସେ ମୀବାରକୁ ଶ୍ମଶାନ କରି ଦେବେ । ପ୍ରଜାକୁଳକୁ ଉଚ୍ଛନ୍ନ କରି ଦେବେ । ଭୀମସିଂହ ବଡ଼ ବିପଦରେ ପଡ଼ିଲେ । କଣ କରିବେ କିଛି ଠିକ୍ କରି ପାରିଲେ ନାହିଁ । ସେଥି ସକାଶେ ରାଣା ସର୍ଦ୍ଦାର ଓ ଆତ୍ମୀୟମାନଙ୍କୁ ନେଇ ଏକ ସଭା କଲେ । ସଭାରେ ସମାଧାନର ଉପାୟ ସ୍ଥିର କରାଗଲା । କୃଷ୍ଣା ହିଁ ଏହି କଳିର କାରଣ । ସେ ନ ଥିଲେ, ଆଉ କଳି ହେବ କାହାଲାଗି । ତାଙ୍କୁ ବଧ କରିବାକୁ ହେବ ।

କିନ୍ତୁ କୃଷ୍ଣାଙ୍କୁ ବଧ କରାଯିବ କିପରି ? ସେଥି ସକାଶେ ଦୌଲତ ସିଂହ ନାମକ ଜଣେ ସର୍ଦ୍ଦାରଙ୍କୁ କୁହାଗଲା । ଦୌଲତ ଉତ୍ତର ଦେଲେ, "ମହାରାଜ, ଏପରି ନିଷ୍ଠୁର କଥା ଆପଣଙ୍କ ମୁହଁରୁ ବାହାରୁଛି କିପରି ? ନିତାନ୍ତ ପିଶାଚ, ବର୍ବର ନ ହେଲେ ଶ୍ରୀଜୀଙ୍କ ରକ୍ତପାତ କେବେଁ କରି ପାରିବ ନାହିଁ । ଏହି ନିର୍ମମ ପାଶବିକ କାର୍ଯ୍ୟ କରି ଯେବେ ରାଜଭକ୍ତି ଦେଖାଇବାକୁ ହୁଏ, ତେବେ ମୋର ଜୀବନକୁ ଧିକ୍ ଏବଂ ରାଜଭକ୍ତିକୁ ଧିକ୍ ।"

ରାଜାଙ୍କ ଆଦେଶରେ ଯୌସୁନ ଦାସ ନାମରେ ଆଉ ଜଣେ ବ୍ୟକ୍ତି କୃଷ୍ଣାଙ୍କୁ ବଧ କରିବାକୁ ଅଗ୍ରସର ହେଲେ । କିନ୍ତୁ କୃଷ୍ଣାଙ୍କ ଲବଣୀ ପିତୁଳା ରୂପ ଯେତେବେଳେ ତାଙ୍କ ଆଖିରେ ପଡ଼ିଲା । ତାଙ୍କ ହାତରୁ ଅସି ଖସି ପଡ଼ିଲା । ସେ ବିଫଳ ହୋଇ ଫେରି ଆସିଲେ ।

ଯୌସୁନ ଦାସଙ୍କ ସେହି ଚେଷ୍ଟାରୁ ଅନ୍ତଃପୁରର ସମସ୍ତେ କୃଷ୍ଣଙ୍କୁ ବଧ କରାଯିବାକୁ ଆଦେଶ ହୋଇଛି ବୋଲି ଜାଣି ପାରିଲେ । ଖବରଟି ବଜ୍ରାଘାତର ସ୍ୱରୂପରେ ଖେଳିଗଲା । ଯେ ଶୁଣିଲା ସେ କାନରେ ହାତ ଦେଲା । ରାଣୀ ଯେତେବେଳେ ଶୋକରେ ବ୍ୟାକୁଳ ଓ ମୂର୍ଚ୍ଛିତା ହୋଇ ଉଚ୍ଚ ସ୍ୱରରେ 'ହା କୃଷ୍ଣା' ହା କୃଷ୍ଣା ବୋଲି ବିଳାପ କଲେ, ସେତେବେଳେ କୃଷ୍ଣାକୁମାରୀ ମଧ୍ୟ ବିଳାପର କାରଣ ବୁଝି ପାରିଲେ । ସେ ଟିକିଏ ବି ବିଚଳିତ ହେଲେ ନାହିଁ । ସେ ବୁଝି ପାରିଲେ ରାଜ୍ୟ ଓ ପ୍ରଜାମାନଙ୍କ ଜୀବନ ଅପେକ୍ଷା ଗୋଟିଏ କନ୍ୟାର ଜୀବନ ମୂଲ୍ୟ ଅଧିକ ନୁହେଁ । ରାଜ୍ୟକୁ ରକ୍ଷା କରିବା ନିମନ୍ତେ, ଲକ୍ଷ ଲକ୍ଷ ପ୍ରଜାଙ୍କର ରକ୍ତପାତ ବନ୍ଦ କରିବା ନିମନ୍ତେ ପିତା ଯେଉଁ ଆଦେଶ ଦେଇଛନ୍ତି, ତାହା ବିବେକର କାର୍ଯ୍ୟ କରିଛନ୍ତି ।

କୃଷ୍ଣା ମାତାଙ୍କ ନିକଟକୁ ଯାଇ କହିଲେ, "ମାଆ, କାନ୍ଦୁଛ କାହିଁକି ? ମନୁଷ୍ୟ ଜନ୍ମ ହୋଇଛି ଯଦି ଅବଶ୍ୟ ମରିବ । ଯଦି ତା'ର ମୃତ୍ୟୁରେ ଶତ ସହସ୍ର ଲୋକଙ୍କର ଉପକାର ହୁଏ, ଧନ ଜୀବନର ରକ୍ଷା ହୁଏ, ସେପରି ମରଣ ଶ୍ଳାଘ୍ୟ । ତୁମେ କ୍ଷତ୍ରିୟର କନ୍ୟା, ତୁମ ଗର୍ଭରେ ମୋର ଜନ୍ମ । ଆମେ ପୁଣି ମରଣକୁ ଡରିବା ? ରାଜପୁତ ଘରେ ଝିଅ ଜନ୍ମ ହେବା ମାତ୍ରେ ଅପମୃତ୍ୟୁ ହାତରେ ପ୍ରାଣ ଦେଇ ଯାଉଥାଏ । ଏକ, ଯୁଦ୍ଧରେ ପ୍ରାଣ ଦେବ ନ ହେଲେ ନିଆଁରେ

ପଶି ମରିବ । ମୁଁ ତ କେବେ ଠୁଁ ମରି ସାରନ୍ତିଣି ; କିନ୍ତୁ ପିତାଙ୍କ ଯୋଗୁଁ ଆଜି ପର୍ଯ୍ୟନ୍ତ ବଞ୍ଚିଛି । ତୁମେ ସେ କଥା ବୁଝି ନାହଁ । ତୁମେ ଜଣେ ପଦ୍ମା, ସଂଯୁକ୍ତା ଆଦି ରାଜପୁତ ରମଣୀମାନଙ୍କ ପରିଣତି ଭୁଲିଗଲ ? କାନ୍ଦିବା କଣ ତୁମକୁ ଶୋଭା ପାଏ ମାଆ ?

“ମାଆ, ମୋର ଲାଗି କେତେ ନିରପରାଧ ଲୋକ ମଲେଣି । ମିବାର ଶ୍ମଶାନ ହେବାକୁ ବସିଛି । ଶତ ସହସ୍ରଙ୍କ ରକ୍ତରେ ମିବାର ଭୂମି ପ୍ଲାବିତ ହେବ । କନ୍ୟା ସ୍ନେହରେ ରାଣା କଣ ନିଜ କର୍ତ୍ତବ୍ୟରେ ତ୍ରୁଟି କରିବେ ? ସେଥା କଣ ରାଣାଙ୍କ ଚରିତ୍ର ସୁନ୍ଦର ହେବ ? ଧୈର୍ଯ୍ୟ ଧର ମାଆ, ରାଜପୁତ ରମଣୀର କର୍ତ୍ତବ୍ୟ ସ୍ମରଣ କର ।”

କୃଷ୍ଣା କୁମାରୀ ପ୍ରଜାଙ୍କର ହିତ ନିମନ୍ତେ, ସୁଖ ଶାନ୍ତି ନିମନ୍ତେ ଜୀବନ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ଅଛନ୍ତି, ଆନନ୍ଦିତ ଅଛନ୍ତି । କର୍ତ୍ତବ୍ୟ କରିବାକୁ ତାଙ୍କର ଟିକେ ହେଲେ ଦ୍ୱିଧା ବା କାତରତା ନାହିଁ ।

ରାଜକୁମାରୀଙ୍କୁ ହତ୍ୟା କରିବା ପାଇଁ କେହି ପୁରୁଷ ରାଜି ହେଲେ ନାହିଁ । ନିରୁପାୟ ହୋଇ ରାଣା ଶେଷରେ ଗୋଟିଏ ସ୍ତ୍ରୀ ହାତରେ ତାଙ୍କୁ ବିଷ ପାନ କରିବାକୁ ଦେଲେ ।

ବିଷ ପାତ୍ର ହାତକୁ ନେଇ କୃଷ୍ଣାକୁମାରୀଙ୍କ ମୁଖ ମଣ୍ଡଳରେ କି ମନ ମଧ୍ୟରେ ଟିକିଏ ହେଲେ ବିକାର ଦେଖାଗଲା ନାହିଁ । ତାଙ୍କ ହାତ ଗୋଡ଼ ଟିକିଏ ହେଲେ ବିକଳ କି ହଲଚଲ ହେଲା ନାହିଁ । ରାଜ୍ୟର, ପ୍ରଜାଙ୍କର ମଙ୍ଗଳ କାମନା କରି ହସି ହସି ବିଷପାନ କଲେ । ସେହି ବିଷ ତାଙ୍କ ପ୍ରାଣ ନେବାକୁ ସାହସ କଲା ନାହିଁ । ସେ ଏହିପରି ତିନଥର ବିଷପାନ କଲେ ।

ଶେଷରେ ଏକ ହଳାହଳ କାଳକୂଟ ପ୍ରସ୍ତୁତ ହେଲା । ରାଜକୁମାରୀ ତାହା ଆନନ୍ଦରେ ପାନ କରି ବୁଝି ପାରିଲେ, ତାଙ୍କୁ ଆଉ ଥରେ ବିଷ ପାନ କରିବାକୁ ହେବ ନାହିଁ । ପିତାଙ୍କୁ ସଙ୍କଟରୁ ଉଦ୍ଧାର କରିବାକୁ ଯେ ଅନନ୍ତ ନିଦ୍ରାରେ ଶୋଇଲେ, ସେହି ନିଦ୍ରାରୁ ଆଉ ଜାଗରଣ ନାହିଁ ।

ପ୍ରଜାଙ୍କର ରକ୍ତପାତ ନିରୋଧ ନିମନ୍ତେ, ରାଜ୍ୟର ଧନଜୀବନ ରକ୍ଷା ନିମନ୍ତେ, ଜନ୍ମଭୂମିର କଲ୍ୟାଣ ନିମନ୍ତେ, ରାଜପୁତ ଯୁବତୀ କୃଷ୍ଣାକୁମାରୀ ଯେଉଁ ଆଦର୍ଶ ପୃଥିବୀ ସମ୍ମୁଖରେ ଥୋଇ ଗଲେ, ତହିଁର ଅନୁସରଣ ପୃଥିବୀରେ ଏ ପର୍ଯ୍ୟନ୍ତ କେହି କରିପାରି ନାହାନ୍ତି ।

—୦—

## କର୍ମ ଦେବୀ

ରାଜପୁତନା ଅନ୍ତର୍ଗତ ଅଜନ୍ତ ନଗରରେ ମୋହିଲ ନାମରେ ଦଳେ ରଜପୁତ ଜାତି ବାସ କରୁଥିଲେ । ସେହି ସମୟରେ ମାଣିକ ରାଓ ନାମକ ଜଣେ ରାଜା ଏହି ରାଜ୍ୟ ଶାସନ କରୁଥିଲେ । ତାହାଙ୍କ କନ୍ୟାର ନାମ କର୍ମଦେବୀ । ସେତେବେଳେ ମାରବାଡର ସୁନ୍ଦର ରାଜ୍ୟରେ ଚଣ୍ଡନାମକ ଜଣେ ରଠୋର ବଂଶୀୟ ରାଜା ରାଜପଣ କରୁଥିଲେ । ରଠୋର ମାନେ କୁଳୀନ ଥିବାରୁ ରାଜା ମାଣିକରାଓ ସୁନ୍ଦର ରାଜ୍ୟର ରାଜକୁମାର ଅରଣ୍ୟକୁମାରଙ୍କୁ ସ୍ୱୀୟ କନ୍ୟା ପ୍ରଦାନ କରି ଧନ୍ୟ ହେବେ ବୋଲି ମନ ମଧ୍ୟରେ ସ୍ଥିର

କରିଥିଲେ । କୁଳୀନଜାତି ସମ୍ଭୂତ ବିବାହ ହେବାରେ ଆପତ୍ତି ଉଠିବା ବୁଝି ଥାଇ ବରଂ ପ୍ରତିପତ୍ତି ବଢ଼ିବ ବୋଲି ସେ କନ୍ୟାର ମତ ବୁଝି ନ ଥିଲେ । ମାତ୍ର ବୀରାନୁରାଗିଣୀ କର୍ମଦେବୀ ବାଲ୍ୟକାଳରୁ ସାଧୁ ନାମକ ଜଣେ ରାଜପୁତ୍ରଙ୍କର ବୀରତ୍ୱର ପ୍ରଶଂସା ଶୁଣି ମନେ ମନେ ତାଙ୍କୁ ପତି ପଦରେ ବରଣ କରିବେ ବୋଲି ସ୍ଥିର କରିଥିଲେ । ଦୈବେ ଘଟନା କ୍ରମେ ବୀରବର ସାଧୁ କୌଣସି ଯୁଦ୍ଧରୁ ଫେରୁଥିବା ବେଳେ ବାଟରେ ଅବନ୍ତ ନଗରରେ ଉପସ୍ଥିତ ହେଲେ । କର୍ମଦେବୀଙ୍କ ପିତା ମାଣିକରାଓ ତାହାଙ୍କୁ ନିଜ ଭବନକୁ ନିମନ୍ତ୍ରଣ କରି ଆଣିଲେ । ଏହିଠାରେ କର୍ମଦେବୀଙ୍କର ତାଙ୍କୁ ଦେଖିବାର ସୁବିଧା ଘଟିଲା । ଚକ୍ଷୁ କର୍ଣ୍ଣର ବିବାଦ ମେଣ୍ଟିଲା । ସାଧୁଙ୍କର ବୀରତ୍ୱ ବ୍ୟଞ୍ଜକ ଉଦ୍ଦୀପ୍ତ ପ୍ରଫୁଲ୍ଲବଦନ ମଣ୍ଡଳ ଦେଖି ବୀରବାଳା ଏକାବେଳକେ ମୁଗ୍ଧ ହୋଇ ତାଙ୍କ ପଦରେ ମନ ପ୍ରାଣ ଢାଳି ଦେଇଥିଲେ ; କିନ୍ତୁ ଏହା ପୂର୍ବରୁ କୁଳୀନ ରାଠୋର ବଂଶୀୟ ରାଜପୁତ୍ରଙ୍କ ସହିତ ବିବାହ ସ୍ଥିର ହୋଇଥିଲା । କ୍ଷୁଦ୍ର ପୁଗଳ ରାଜ୍ୟର ସାମାନ୍ୟ ଭଟ୍ଟବଂଶୀୟ ରାଜା ରଣଙ୍ଗ ଦେବଙ୍କର ପୁତ୍ରଙ୍କୁ ପତିରୂପେ ବରଣ କରିବାର ଶୁଣି ପିତା କନ୍ୟା ପ୍ରତି ଅସନ୍ତୁଷ୍ଟ ହେଲେ । ସେ ଦେଖିଲେ ବିବାହ ପ୍ରସ୍ତାବ ଭଙ୍ଗ କଲେ ଏବେ ପ୍ରତାପୀ ରାଠୋର ପତିଙ୍କ ଅବମାନନା ହେବ ଏବଂ ଘୋର ପ୍ରତିହିଂସାରେ ରାଜ୍ୟ ଛାରଖାର ହୋଇଯିବ । ଆଉ ମଧ୍ୟ ଜାମାତା ଓ ଦୁହିତା ଦୁଇଜଣଙ୍କର ପ୍ରାଣରକ୍ଷା ସୁଦ୍ଧା ଅସମ୍ଭବ ହୋଇ ପଡ଼ିବ । ବିବାହ କଲେ କୁଳୀନ ରାଜପୁତ ବଂଶ ସହିତ ସମ୍ବନ୍ଧ କରିବା ଦ୍ୱାରା ଆପଣାର ସମ୍ମାନ ବଢ଼ିବ । ରାଜା ଏହିପରି ବିଷମ ସମସ୍ୟାରେ ପଡ଼ିଲେ । ସଙ୍ଗିନୀମାନେ କର୍ମଦେବୀଙ୍କୁ ନାନା ପ୍ରକାର ଯୁକ୍ତି ଦେଖାଇ ବୁଝାଇବାକୁ ଲାଗିଲେ । ବୀରବାଳା କର୍ମଦେବୀ ଏହାର ଉତ୍ତର ଦେଲେ "କୁଳୀନବଂଶ ଜନ୍ମ ଅଧିକ ଧନ ସମ୍ପଦ ଅପେକ୍ଷା ବୀରତ୍ୱ ରାଜପୁତ

ନାରୀର ଅଧିକ ପ୍ରିୟବସ୍ତୁ । ମୁଁ ବୀରପୁରୁଷର ସହଧର୍ମିଣୀ ହୋଇ ପାରିଲେ ବଡ଼ ରାଜ୍ୟର ମହାରାଣୀ ହେବାକୁ ଚାହେଁ ନାହିଁ । ବୀର ସାଙ୍ଗରେ ଘୋଡ଼ାରେ ଚଢ଼ି ବୁଲି ପାରିଲେ, ସିଂହାସନ ଅପେକ୍ଷା ମୋର ଅଧିକ ସୁଖ । ଅତଏବ ମୁଁ ଯାହାଙ୍କ ବୀରପଣରେ ମୁଗ୍ଧ ହୋଇ ଆତ୍ମସମର୍ପଣ କରିଛି ସେହି ଏକା ମୋର ସ୍ୱାମୀ । ବୀରାଗ୍ରଣୀ ସାଧୁ ଯଦି ସେ ସୁନ୍ଦର ରାଜାର ପ୍ରତିହିଂସାରୁ ଆତ୍ମରକ୍ଷା କରି ନ ପାରିବେ, ତେବେ ଜାଣିବ ଯେ ବିଧାତା ମୋହର ସୁଖରେ ପ୍ରତିକୂଳ । ତାହା ହେଲେ ମୁଁ ଅକୁଣ୍ଠିତ ଚିତ୍ତରେ ମୃତ ପତିଙ୍କ ସହିତ ଚିତାନଳରେ ପ୍ରବେଶ କରିବି । ସ୍ୱର୍ଗରେ ଅବଶ୍ୟ ଉଭୟଙ୍କର ମିଳନ ହେବ ।” ସହଚରୀମାନେ ଏଥିରେ ନିରୁତ୍ତର ହେଲେ । ରାଜା କନ୍ୟାର ମତ ପରିବର୍ତ୍ତନର ସମ୍ଭାବନା ନ ଦେଖି ଅଗତ୍ୟା ସେହି ସାଧୁଙ୍କ ସହିତ ବିବାହ ପ୍ରସ୍ତାବ କଲେ । ରାଜପୁତ୍ର ସାଧୁ ରାଜକୁମାରୀ କର୍ମଦେବୀର ଦୃଢ଼ ସଂକଳ୍ପର କଥା ଶୁଣି ତାହାଙ୍କୁ ଆନ୍ତରିକ ପ୍ରଶଂସା କରି ଆନନ୍ଦରେ ବିବାହରେ ସମ୍ମତ ହେଲେ । ଯଥାକାଳରେ ଦୁହିଙ୍କର ଶୁଭ ପରିଣୟ ସମ୍ପନ୍ନ ହେଲା । ଯୌତୁକ ସମ୍ଭାର ସହ ସାଧୁ ନବବଧୂଙ୍କୁ ନେଇ ପୂଗଲ ଅଭିମୁଖେ ଯାତ୍ରା କଲେ । କାଳେ ପଥ ମଧ୍ୟରେ ପ୍ରତିଦ୍ୱନ୍ଦୀ ଅରଣ୍ୟ କମଳ କିଛି ଅନିଷ୍ଟ ଘଟାଇବେ, ଏହି ଆଶଙ୍କାରେ ରାଜା ମାଣିକରାଓ ପାଞ୍ଚ ସହସ୍ର ସୈନ୍ୟ ଜାମାତାଙ୍କ ସହିତ ପ୍ରେରଣ କରିବାକୁ ଇଚ୍ଛା କଲେ । ମାତ୍ର ବୀରପୁରୁଷ ସାଧୁ ଆପଣାର ଶକ୍ତି ଉପରେ ଗର୍ବ କରି ଯିବା ହୀନତା ମଣି ସେ ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ତଥାପି ରାଜା ନବ ଦମ୍ପତିଙ୍କ ସହିତ ନିଜ ପୁତ୍ର ଓ ସାତଶହ ମୋହିଲ ସୈନିକ ପ୍ରେରଣ କରିଥିଲେ ।

ଏଣେ ସୁନ୍ଦର ରାଜକୁମାର ଅରଣ୍ୟ କମଳ ଏହି ବିବାହରେ ଆପଣାକୁ ଯଥେଷ୍ଟ ଅପମାନିତ ମନେକରି ତାହାର ଉପଯୁକ୍ତ

ପ୍ରତିଶୋଧ ନେବା ପାଇଁ ଆୟୋଜନ କଲେ । ଅବର୍ଣ୍ୟକମଳ ମଧ୍ୟ ଜଣେ ବୀର ପୁରୁଷ ଥିଲେ । ସାଧୁଙ୍କ ସହିତ ଯୁଦ୍ଧରେ ଆପଣାର ସମ୍ମାନ ରକ୍ଷା ନିମନ୍ତେ ସେ ବହୁ ସୈନ୍ୟ ଧରି ପଥ ମଧ୍ୟରେ ଉପସ୍ଥିତ ହେଲେ ଏବଂ ସାଧୁଙ୍କ ସଙ୍ଗରେ ଅତି ଅଳ୍ପ ସୈନିକ ଦେଖି ଆପଣାର ଯୋଦ୍ଧାମାନଙ୍କୁ ହଠାତ୍ ଆକ୍ରମଣରୁ ବାରଣ କଲେ । ସାଧୁ ଥରେ ବିପକ୍ଷ ଦଳର ଚେଷ୍ଟା ଧୀର ଭାବରେ ନିରୀକ୍ଷଣ କରିଗଲେ । ଅନନ୍ତର ଉଭୟ ପକ୍ଷ ମଧ୍ୟରେ ଦ୍ୱନ୍ଦ୍ୱ ଯୁଦ୍ଧ ଆରମ୍ଭ ହେଲା । ମାତ୍ର ଦୁଇ ଜଣଙ୍କ ସ୍ୱାର୍ଥ ଯୋଗୁଁ ଅନର୍ଥକ ଏତେ ଲୋକଙ୍କର ରକ୍ତପାତ ହେବା ଧର୍ମସଙ୍ଗତ ନୁହେଁ ବୋଲି ବିଚାର କରି ଶେଷରେ ସେ ବୀର ଦୁହେଁ କେବଳ ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହେବାର ସ୍ଥିର କଲେ । ସାଧୁ ନବବଧୂଙ୍କ ନିକଟରୁ ବିଦାୟ ନେବାକୁ ଗଲେ । ବିଦାୟ କାଳରେ କର୍ମଦେବୀ ସହାସ୍ୟ ବଦନରେ କହିଲେ, "ଯାଅ ନାଥ, ମୁଁ ଆଜ ସ୍ୱନେତ୍ରରେ ତୁମ୍ଭର ବୀରତ୍ୱ ଦେଖି କୃତାର୍ଥ ହେବି । ତୁମ୍ଭେ ବୀରପୁରୁଷ, ବୀର ସଙ୍ଗେ ଯୁଦ୍ଧ କରି ଆପଣାର ମାନ ରକ୍ଷା କର । ଜୟ ବା କ୍ଷୟ ଯାହା ଲାଭ କର, ସେଥିରେ ବୀରର ମାନ ରକ୍ଷା ହେବ । ମୁଁ ମୃତ୍ୟୁକେ ସୁଦ୍ଧା କାତର ହେବ ନାହିଁ । ମୋ ପ୍ରତି ଦୃଷ୍ଟି ରଖି ଯେପରି ପରାଜୟ ନ ପାଅ । ବୀରର ଜୀବନ ଅପେକ୍ଷା ମାନ ବଡ଼ । ଏଥିରେ ଯଦି ତୁମ୍ଭର ଜୀବନ ଯାଏ, ଚିନ୍ତା କରିବ ନାହିଁ । ମୁଁ ତୁମ୍ଭର ଅନୁଗାମିନୀ ହେବି ।"

ଦ୍ୱିଗୁଣ ଉତ୍ସାହରେ ସାଧୁ ଯୁଦ୍ଧରେ ପ୍ରବୃତ୍ତ ହେଲେ । ବୀର ସ୍ତ୍ରୀ କର୍ମଦେବୀ ନିଶ୍ଚଳ ଭାବରେ ଠିଆ ହୋଇ ସବୁ ଦେଖୁଥିଲେ । ଶେଷରେ ପ୍ରାଣପ୍ରିୟ ପତିଙ୍କୁ ଭୂତଳରେ ପତିତ ହେବାର ଦେଖି ନିକଟକୁ ଆସିଲେ । ଚକ୍ଷୁରେ ଅଶ୍ରୁ ନାହିଁ କି ମୁଖରେ ବିଷାଦର ଚିହ୍ନ ସୁଦ୍ଧା ନାହିଁ । ଇହ ଲୋକରେ ପତିସଙ୍ଗ ଲାଭ କରି ପାରି

ଥିଲେହେଁ ପରଲୋକରେ ପତିସଙ୍ଗିନୀ ହୋଇ ପାରିବେ ଏହି ଆଶାରେ ସତୀର ହୃଦୟ ଅବିଚଳିତ ରହିଥିଲା । ଗିରିବାଳା କିଛିମାତ୍ର କାଳବି ନ ହୋଇ ଭୃତ୍ୟମାନଙ୍କୁ ଚିତା ପ୍ରସ୍ତୁତ କରିବାକୁ ଆଦେଶ ଦେଲେ । ଚିତାଶଯ୍ୟା ଉପରେ ପତିଙ୍କର ମୃତଦେହ ସ୍ୱହସ୍ତରେ ଉଠାଇ ଯତ୍ନରେ ଶୁଆଇଲେ ଓ ପତିଙ୍କ ହସ୍ତରୁ ତରବାରି ଆଣି ଏକାଘାତରେ ଆପଣାର ଗୋଟିଏ ହାତ କାଟି ବିଶ୍ୱସ୍ତ ଭୃତ୍ୟ ହସ୍ତରେ ଦେଇ କହିଲେ, "ମୋହର ଶ୍ୱଶୁର ଦେବଙ୍କୁ ପ୍ରଣାମ ଜଣାଇ କହିବ, ମୋହ ଭାଗ୍ୟରେ ସେ ଚରଣ ଦର୍ଶନ ସୁଖ ଘଟିଲା ନାହିଁ । ଏହି ହାତଟି ତାଙ୍କୁ ଦେଖାଇ କହିବ ତାଙ୍କର ପୁତ୍ରବଧୂ ଏହିପରି ଥିଲେ ।" ଶେଷରେ ସତୀ ଜଣେ ବିଶ୍ୱାସୀ ଭୃତ୍ୟକୁ ପାଖକୁ ଡାକି କହିଲେ, "ଦେଖ, ଗୋଟିଏ ହାତରେ ଆଉ କାଟି ହେବ ନାହିଁ । ତୁମ୍ଭେ ମୋହର ଏ ହାତଟି କାଟି ପକାଅ ।" ଭୃତ୍ୟ ନୀରବରେ ତାହା ପାଳନ କଲେ । ତହୁଁ କର୍ମଦେବୀ କହିଲେ, "ଏ ହାତଟି ନେଇ ଯାଅ, ମୋହର ଜାତିର ଭଟ୍ଟକବିମାନଙ୍କୁ ଦେବ ।" ଏହି ରୂପେ ଅଭିପ୍ରେତ ଆଦେଶ ଦେଇ ସତୀ ଅନୁଗତା କର୍ମଦେବୀ ଚିତା ଉପରେ ସ୍ୱାମୀଙ୍କ ପାର୍ଶ୍ୱରେ ଶୟନ କଲେ । ଦର୍ଶକମାନେ ଚିତାର ଚତୁର୍ଦ୍ଦିଗ ପରିବେଷ୍ଟନ କରି ଏହି ଦୃଶ୍ୟ ସ୍ତମ୍ଭିତ ଭାବରେ ଅଶ୍ରୁପୂର୍ଣ୍ଣ ନୟନରେ ଦେଖୁ ଦେଖୁ ଶବବହ୍ନି ପ୍ରଜ୍ୱଳିତ ହେଲା । କ୍ଷଣକରେ ବୀର ଦମ୍ପତିଙ୍କର ଦେହ ଧୂମ ଭସ୍ମରେ ପରିଣତ ହୋଇଗଲା ।

ଯଥାକାଳରେ ଯୁଗଳ ରାଜ୍ୟରେ ସତୀ ଶିରୋମଣିଙ୍କର ଛିନ୍ନ ବାହୁ ପହଞ୍ଚିଲା । ବୃଦ୍ଧ ରାଜା ରଣଙ୍ଗ ଦେବ ପୁତ୍ରବଧୂର ଛିନ୍ନ ବାହୁ ହୃଦୟରେ ଧାରଣ କରି ବିଳାପ କରିବାକୁ ଲାଗିଲେ । ସମସ୍ତ ରାଜପୁର ପୁତ୍ର ଓ ବଧୂଙ୍କର ଅକାଳ ମୃତ୍ୟୁବାର୍ତ୍ତା ଶ୍ରବଣରେ ମର୍ମ ବିଦାରକ କରୁଣ ଧ୍ୱନିରେ କ୍ଷଣକେ ପୂର୍ଣ୍ଣ ହୋଇଗଲା । ଅନନ୍ତର

ସମ୍ପୂର୍ଣ୍ଣ ଚିତାରେ କର୍ମଦେବୀଙ୍କର ଛିନ୍ନବାହୁ ମଧ୍ୟରେ ଦଗଧ କରାଗଲା । ରାଜା ସେହି ଦାହ ସ୍ଥାନରେ ପୁତ୍ରବଧୂର ସ୍ମରଣାର୍ଥେ ଗୋଟିଏ ବୃହତ୍ ପୁଷ୍କରଣୀ ଖୋଳାଇ ଦେଇଥିଲେ । ଏହି ପୁଷ୍କରଣୀ “କର୍ମଦେବୀ ସରୋବର” ନାମରେ ଲୋକରେ ବିଖ୍ୟାତ ହୋଇଥିଲା ।

—o—

# ଖନା

ଆଜକୁ ପ୍ରାୟ ଦୁଇ ହଜାର ବର୍ଷ ପୂର୍ବେ ମାଳବ ଦେଶରେ ବିକ୍ରମାଦିତ୍ୟ ବୋଲି ଜଣେ ବିଖ୍ୟାତ ରାଜା ଥିଲେ । ତାଙ୍କର ରାଜଧାନୀ ଉଜ୍ଜୟିନୀ । ବହୁ ଧନରତ୍ନ ଐଶ୍ୱର୍ଯ୍ୟରେ ପୂର୍ଣ୍ଣ ଥାଇ ଅମରାବତୀ ପରି ନାମ କରିଥିଲା । ମହାରାଜା ବିକ୍ରମାଦିତ୍ୟ ବିଦ୍ୟାର ବଡ଼ ଆଦର କରୁଥିଲେ ଏବଂ ଗୁଣ ଦେଖି ବହୁ ଦାନ ଓ ପୁରସ୍କାର ଦେଉଥିବାରୁ ନାନା ଦେଶରୁ କବି, ବୈଦ୍ୟ, ପଣ୍ଡିତ ଓ ନାନା ଶାସ୍ତ୍ରବିଶାରଦ ବ୍ୟକ୍ତି ଉଜ୍ଜୟିନୀକୁ ଯାଇ ତାଙ୍କର ଆଶ୍ରୟ ନେଉଥିଲେ । ତାହାଙ୍କ ସଭାରେ ଭିନ୍ନଭିନ୍ନ ବିଦ୍ୟାରେ ବିଶାରଦ ନଅଜଣ ପଣ୍ଡିତ ଥିଲେ । ସେମାନଙ୍କୁ ନବରତ୍ନ କୁହାଯାଉଥିଲା । ଏହି ନବରତ୍ନଙ୍କ ମଧ୍ୟରେ କାଳିଦାସ ଥିଲେ ମହାକବି, ଧନ୍ୱନ୍ତରି ଥିଲେ ଶ୍ରେଷ୍ଠ ବୈଦ୍ୟ, ଆଉ ବରାହ ମିହିର ଥିଲେ ପ୍ରଧାନ ଜ୍ୟୋତିଷୀ ।

ମନୁଷ୍ୟର କୋଷ୍ଠୀ ଦେଖି ସମସ୍ତ ଜ୍ୟୋତିଷୀ ଶୁଭ ହେଉ ଅଶୁଭ ହେଉ ଗଣନା କରି କହି ଦେବେ ; କିନ୍ତୁ ଏହି ଜ୍ୟୋତିଷୀ ଋଷି ବରାହ ମିହିରଙ୍କର ଏପରି କ୍ଷମତା ଥିଲା ଯେକୌଣସି ପଶୁକୁ

ବେଶି ମୁଦ୍ଧା ସେ ଭାଗ୍ୟଫଳ କହି ପାରୁଥିଲେ । ତାଙ୍କର ଗୋଟିଏ ପୁତ୍ର ହୋଇଥିଲା ତାହାର ନାମ ମିହିର । ପିତାଙ୍କଠାରୁ ଶିକ୍ଷା କରି ମିହିର ମଧ୍ୟ ଚତୁର ବଳ ଜ୍ୟୋତିଷଜ୍ଞ ହେଲେ । ଅଳ୍ପ ବୟସରେ ମିହିରଗ୍ରହଣ୍ୟ ଦେଶ ଭ୍ରମଣରେ ଯାଇ ଲଙ୍କାରେ ଉପସ୍ଥିତ ହେଲେ । ସେଠାରେ କିଛି ଦିନ ରହିବା ପରେ ସେ ଶୁଣିବାକୁ ପାଇଲେ ଯେ ଖନା ନାମରେ ଗୋଟିଏ କନ୍ୟା ଗ୍ରହ ଜ୍ୟୋତିଷ ବିଦ୍ୟା ଜାଣେ । ମିହିର ଖନାଙ୍କର ପରିଚୟ ପାଇ ଓ ତାଙ୍କ ଗୁଣରେ ମୁଗ୍ଧ ହୋଇ ତାଙ୍କୁ ବିବାହ କରିଥିଲେ । ଖନା ପତିଙ୍କ ସାଙ୍ଗରେ ଶ୍ୱଶୁରାଳୟରେ ଉପସ୍ଥିତ ହୋଇ ବରାହଙ୍କର ଗୃହ ଉଜ୍ଜ୍ୱଳ କଲେ । ଏତେ ବିଦ୍ୟାବତୀ ହୋଇ ଖନା ଟିକେ ମଧ୍ୟ ଗର୍ବ ନ କରି ସାଧାରଣ ବଧୂ ପରି ରନ୍ଧନାଦି କରି ସମସ୍ତ ଗୃହକାର୍ଯ୍ୟ ସ୍ୱହସ୍ତରେ ସମ୍ପନ୍ନ କରୁଥିଲେ ; କିନ୍ତୁ ସେ ସାନ ହେଲେ କଣ ହେବ, ବିଦ୍ୟାରେ ପତି ଓ ଶ୍ୱଶୁରଙ୍କ ଠାରୁ ବଳିଷ୍ଠ ବଡ଼ ଥିଲେ । କେବେ କେବେ ଏପରି ଘଟିଛି, ଶ୍ୱଶୁର କୋଷ୍ଠୀ ଗଣନା କରୁଥିବା ସମୟରେ ସେ ଦୂରରୁ ଜାଣି ଦେଇ ସେଥିର ଭୁଲ ଧରି ଦେଉଥିଲେ । ଏଥିରେ ବିଦ୍ୟାଭିମାନୀ ବରାହ ତାଙ୍କ ପ୍ରତି କୋପ ପ୍ରକାଶ କରୁଥିବାର ଶୁଣା ଯାଇଅଛି । କିନ୍ତୁ ଏହା ତାଙ୍କର ଉଚିତ ନ ଥିଲା । କାରଣ ଖନା ନିଜର ବଡ଼ିମା ଦେଖାଇବା ପାଇଁ ସେପରି କରୁ ନ ଥିଲେ, ଗଣନାରେ ଭୁଲ୍ ରହିଗଲେ କାହାର କି ବିଷମ ଅନିଷ୍ଟ ଘଟିବ ଏହି ଭୟରେ ସତକଥା ଜଣାଇ ଦେଉଥିଲେ । ଖନାଙ୍କ ଯୋଗେ ଏକଦା ଜ୍ୟୋତିଷବିତ୍ ବରାହଙ୍କର ମାନ ରକ୍ଷା ହୋଇଥିଲା । ଦିନେ ମହାରାଜ ବିକ୍ରମାଦିତ୍ୟ ସଭାରେ ଜ୍ୟୋତିଷାଚାର୍ଯ୍ୟ ବରାହଙ୍କୁ ଗୋଟିଏ ଜ୍ୟୋତିଷ ପ୍ରଶ୍ନ ପଚାରିଲେ । ବରାହ ସଭା ସ୍ଥଳରେ ତାହାର ଉତ୍ତର ଦେବାକୁ ଅସମର୍ଥ ହୋଇ ଗଣନା କରିବା ପାଇଁ ଦିନେ ଅବସର ମାଗିଲେ ଏବଂ ବିଷର୍ଣ୍ଣ

ବଦଳରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ରାତିରେ ଭୋଜନ କାଳରେ ତାଙ୍କର ମୁଖ ମଳିନ ଦେଖି ପୁତ୍ରବଧୂ ଖନା କୋମଳ ଭାବରେ ଏହାର କାରଣ ପଚାରିଲେ । ଶ୍ୱଶୁର ସମସ୍ତ କହିବାରୁ ଖନା ବୁଦ୍ଧିପାଇ କହିଲେ, "ଆପଣ ନିଶ୍ଚିନ୍ତରେ ଭୋଜନ କରନ୍ତୁ, ମୁଁ ଏହି ସମୟ ମଧ୍ୟରେ ଗଣନା କରି ଏହାର ଉତ୍ତର କହିବି ।" ଭୋଜନାନ୍ତେ ପୁତ୍ରବଧୂଙ୍କ ମୁଖରୁ ଉପଯୁକ୍ତ ଉତ୍ତର ପାଇ ତହିଁ ଆର ଦିନ ସଭାରେ ବରାହ ମହାରାଜାଙ୍କୁ ଜଣାଇଲେ । ନୃପଶ୍ରେଷ୍ଠ ବିକ୍ରମାଦିତ୍ୟ ପ୍ରସନ୍ନ ହୋଇ ବହୁ ପୁରସ୍କାର ଦେବାକୁ ବସନ୍ତେ ବରାହ ବିନୀତ ଭାବରେ କହିଲେ "ମହାରାଜ, ଏ ଉତ୍ତର ମୋହର ନୁହେଁ । ମୋର ପୁତ୍ରବଧୂ ଖନା ହିଁ ଏ ଉତ୍ତର ଦେଇଅଛି ।" ରାଜପୁରୀରେ ଏପରି ଜଣେ ବିଦ୍ୟାବତୀ ରମଣୀ ଅଛି ଶୁଣି ମହାରାଜ ନିଜକୁ ଧନ୍ୟ ମନେ କଲେ ଏବଂ ବରାହଙ୍କୁ କହିଲେ, "ତୁମ୍ଭର ପୁତ୍ରବଧୂଙ୍କୁ ରାଜସଭାକୁ ଆସିବାକୁ ହେବ । ମୁଁ ତାହାଙ୍କ ଗୁଣର ଯୋଗ୍ୟ ପୁରସ୍କାର ପ୍ରଦାନ କରି ସଭାର ସମ୍ମାନ ବଢ଼ାଇବି ।" ବରାହ ସେ କାଳର ଲୋକ । ଏଥିରେ ନିରୁତ୍ତର ହୋଇ ଭାବିଲେ, କୁଳବଧୂକୁ ସଭା ମଧ୍ୟକୁ ଆସିବାକୁ ହେବ । ଏହା ବଡ଼ ମାନହାନିର କଥା । କି କୁକ୍ଷଣରେ ଖନା ଏହି ବିଦ୍ୟା ଶିକ୍ଷା କରିଥିଲା, ଆଜି ମୋତେ ବିଷମ ସଙ୍କଟରେ ପକାଇଲା । ଏହା ଭାବି ସେ ଖନାର ଆଗମନରେ ବିଘ୍ନ ଜନ୍ମାଇବା ମାନସରେ ପୁତ୍ରକୁ ଆଜ୍ଞା ଦେଲେ, ଯାଅ ତୁ ବଧୂର ଜିହ୍ୱା ଛେଦନ କର ।" ପୁତ୍ର ସ୍ନେହବଶ ପ୍ରିୟତମା ହେଲେ ବି ଏପରି ସର୍ବନାଶ କରିବାକୁ ଇଚ୍ଛା କରି ପାରିଲେ ନାହିଁ । ତାହା ନ କଲେ ପିତୃ ଆଜ୍ଞା ଲଙ୍ଘନ କରିବାକୁ ହେବ । ବିଷମ ସମସ୍ୟାରେ ପଡ଼ି ମିହିର କିଛି ସ୍ଥିର କରି ପାରିଲେ ନାହିଁ । କଥା କାନକୁ କାନ ହୋଇ ଶେଷରେ ଖନା ଏ କଥା ଶୁଣି ପତିଙ୍କ ନିକଟକୁ ଆସି କହିଲେ । "ପ୍ରାଣେଶ୍ୱର, ସ୍ଥିର

ମୋହ ପାଇଁ ତୁମେ ପିତୃ ଆଜ୍ଞା ଲଂଘନ କରିବାକୁ ବସିଛ ? ମୋହର କ୍ଷଣକ ସନ୍ତୋଷକୁ ଭୟ କରି ତୁମ୍ଭେ ଚିରଦିନକୁ ଅଧର୍ମ ଅର୍ଜନ କରିବ ? ପିତୃ ବାକ୍ୟ ଲଂଘନ କଲେ ମହାପାପ । ମୋହର ଏ ଜୀବନ ବ୍ୟର୍ଥ । ତୁମ୍ଭେ ପିତାଙ୍କ ଆଦେଶ ପାଳନ କଲେ ମୁଁ ଅଧିକ ସୁଖିନୀ ହେବି ।" ସହଧର୍ମିଣୀଙ୍କର ଇଚ୍ଛା ଅନୁସାରେ ମିହିର ପିତାଙ୍କର ନିଷ୍ଠୁର ଆଦେଶ ପାଳନ କଲେ । ଜିହ୍ୱା ଛେଦନରେ ଗୁଣବତୀ ଖନା ପତିଙ୍କ ଆଗରେ ଅମୂଲ୍ୟ ଜୀବନ ହରାଇଲେ । କେହି କେହି କହନ୍ତି, ବରାହ ତାଙ୍କ ଗୁଣରେ ଈର୍ଷାପରାୟଣ ହୋଇ ଏପରି ନିଷ୍ଠୁର ଆଦେଶ ଦେଇ ଥିଲେ । ଯୋଗୀର ଧର୍ମଜ୍ଞାନ କେତେ ବଡ଼, ନାରୀ ହୃଦୟ କେତେ ଉଚ୍ଚ !

ଖନା ବହୁ କାଳରୁ ଇହଧାମ ତ୍ୟାଗ କଲେଣି । ମାତ୍ର ତାଙ୍କ ମୁଖର ବଚନ ଏବେ ନାନା ଅଞ୍ଚଳରେ ଲୋକ ମୁଖରେ ଶୋଭା ପାଉଅଛି । ବଙ୍ଗଳାରେ ଅନେକ ଜ୍ୟୋତିଷ ବଚନ 'ଖନାବଚନ' ବୋଲି ଲୋକରେ ପରିଚିତ । ଆମ୍ଭ ଦେଶରେ ଜ୍ୟୋତିଷର ଅନେକ କଥା ସେହି 'ଖନା ବଚନ' ନାମରେ ଖ୍ୟାତ । ଖନା ନ ଥିଲେ କଣ ହେବ, ତାଙ୍କର ଗୁଣ ଲୋପ ପାଇ ନାହିଁ । ଏଥିପାଇଁ ମହାପୁରୁଷ ମାନେ କହନ୍ତି, "ଶରୀରଂ କ୍ଷଣବିଧ୍ୱଂସି, କଳ୍ପାନ୍ତ ସ୍ଥାୟିନୋ ଗୁଣାଃ" । ଅର୍ଥାତ ଦେହ କ୍ଷଣକରେ ଲୋପ ପାଏ, ଗୁଣ ଅନନ୍ତ କାଳ ଯାଏ ଥାଏ ।

— o —

# ଦୁର୍ଗାବତୀ

ଅଧୁନିକ ଝାନ୍ସୀ ଓ ବାନ୍ଦା ଜିଲ୍ଲା ମଧ୍ୟରେ ମହୋବା ବୋଲି ଏକ ରାଜ୍ୟ ଥିଲା । ସେଠାରେ ମୋଗଲ ସମ୍ରାଟ ଆକବରଙ୍କ ସମୟରେ ଚନ୍ଦେଲ ରାଜପୁତ ବଂଶର ରାଜା ଶାଳିବାହାନ ରାଜତ୍ୱ କରୁଥିଲେ । ତାଙ୍କର କନ୍ୟାଙ୍କ ନାମ ଦୁର୍ଗାବତୀ ।

ରାଜପୁତ ବଂଶରେ ଜନ୍ମଲାଭ କରି ଦୁର୍ଗାବତୀ ସେହି ବଂଶର ସମସ୍ତ ସୁଗୁଣର ଅଧିକାରିଣୀ ଥିଲେ । ସେ ଧନୁଶର ଓ ଖଣ୍ଡା ଧରି ଯୁଦ୍ଧ କରି ପାରୁଥିଲେ । ତାଙ୍କ ମନରେ ଅସୀମ ସାହସ, ଧୈର୍ଯ୍ୟ ଓ ଦେହରେ ଅମାପ ବଳ ଥିଲା । ସେ ଯୁଦ୍ଧରେ ସେନାପତିର କାର୍ଯ୍ୟ ଚଳାଇ ପାରୁଥିଲେ । ତାଙ୍କର ଯୁଦ୍ଧ କୌଶଳ ଦେଖି ଅନ୍ୟ ରାଜାମାନେ ବିସ୍ମିତ ହେଉଥିଲେ ।

ଅଧୁନାତ ମଧ୍ୟ ପ୍ରଦେଶର ଉତ୍ତର ପ୍ରାନ୍ତରେ ଗଣ୍ଡୱାନା ଅଞ୍ଚଳରେ ଗଡ଼ମଣ୍ଡଳ ବୋଲି ଏକ ରାଜ୍ୟ ଥିଲା । ଦୁର୍ଗାବତୀ ଗଡ଼ମଣ୍ଡଳର ଗଣ୍ଡରାଜା ଦଲପତ ସିଂହଙ୍କୁ ବିଭା ହୋଇଥିଲେ । ଦଲପତ ବାହାର ଅଳ୍ପଦିନରେ ମୃତ୍ୟୁ ମୁଖରେ ପଡ଼ିବାରୁ ତାଙ୍କର ଏକମାତ୍ର ଶିଶୁ ପୁତ୍ର ବୀର ନାରାୟଣଙ୍କୁ ସିଂହାସନରେ ବସାଇ ତାଙ୍କ ପକ୍ଷରୁ ଦୁର୍ଗାବତୀ ପଣ ସ୍ୱବ୍ଧରୁ ରୂପେ ରାଜ୍ୟ ପରିଚାଳନା କରିଥିଲେ ।

ଦୁର୍ଗାବତୀ ଯେପରି ସୁନ୍ଦରୀ ଥିଲେ, ରାଜ୍ୟ ପରିଚାଳନାରେ ସେହିପରି ବୁଦ୍ଧିମତୀ ଓ କୁଶଳୀ ଥିଲେ । ଯୁଦ୍ଧ କ୍ଷେତ୍ରରେ ସେହିପରି ପଟୁତା ଓ ବୀର୍ଯ୍ୟ ଦେଖାଇଥିଲେ । ମାଳବର ମୁସଲମାନ ରାଜା ବାଜବାହାଦୁରଙ୍କ ସଙ୍ଗେ ଦୁର୍ଗାବତୀଙ୍କର ଅନେକ ଥର ଯୁଦ୍ଧ ହୋଇଥିଲା । ତିନିଥର ଯୁଦ୍ଧରେ ଦୁର୍ଗାବତୀ ଜିଣିଥିଲେ ।

ଗଡ଼କଣ୍ଟଙ୍ଗ ଜଣେ ସ୍ତ୍ରୀ ଦ୍ୱାରା ଶାସିତ ହେଉଥିବା ଜାଣି ଆକବର ରଜା ହେବାର ଅଳ୍ପଦିନ ପରେ ନିଜ ସେନାପତି ଆସଫ୍ ଖାଁଙ୍କୁ ସେହି ରାଜ୍ୟ ଜୟ କରିବାପାଇଁ ପଠାଇଲେ । ଆସଫ୍ ଖାଁ ପ୍ରଥମେ ଦୁର୍ଗାବତୀଙ୍କ ସାଙ୍ଗେ ସଖ୍ୟ ଭାବ ସ୍ଥାପନ କଲେ । ପରେ ଦୁର୍ଗାବତୀଙ୍କର ବିଶ୍ୱାସ ଜାତ ହେବାରୁ ସେ ୧୫୬୪ରେ ଛଅହଜାର ଅଶ୍ୱାରୋହୀ ଓ ଦଶହଜାର ପଦାତିକ ସୈନ୍ୟସହ ସହସା ଦୁର୍ଗାବତୀଙ୍କ ସଙ୍ଗେ ଯୁଦ୍ଧ କରିବାକୁ ବାହାରିଲେ ।

ଦୁର୍ଗାବତୀ ଏପରି ଯୁଦ୍ଧ ପାଇଁ ପ୍ରସ୍ତୁତ ନଥିଲେ । ତାଙ୍କର ସୈନ୍ୟମାନେ ଇଆଡ଼େ ସିଆଡ଼େ ଥିଲେ ; କିନ୍ତୁ ଦୁର୍ଗାବତୀ ସେଥିରେ ବିଚଳ ବା ହତୋତ୍ସାହ ହେଲେ ନାହିଁ । କୌଣସି ମତେ ପାଞ୍ଚହଜାର



ସୈନିକ ସଂଗ୍ରହ କଲେ ଏବଂ ନିଜେ ରଣଦୁର୍ଗା ବେଶରେ ଘୋଡ଼ା ପିଠିରେ ଚଢ଼ି ଯୁଦ୍ଧକୁ ଅଗ୍ରସର ହେଲେ ।

ଦୁର୍ଗାବତୀଙ୍କ ଉତ୍ସାହରେ ତାଙ୍କର ପାଞ୍ଚହଜାର ସୈନିକ ଷୋହଳ ହଜାର ମୋଗଲ ସୈନିକଙ୍କ ସଙ୍ଗରେ ଭୀଷଣ ଯୁଦ୍ଧ କଲେ ଏବଂ ଅନେକ ଶତ୍ରୁଙ୍କୁ ଯୁଦ୍ଧରେ ନିହତ କଲେ । ଗଡ଼ମଣ୍ଡଳର ସୈନ୍ୟମାନେ ସଂଖ୍ୟାରେ ଊଣା ଥିଲେ ହେଁ ସେମାନଙ୍କର ପରାକ୍ରମ ସହି ନ ପାରି ମୋଗଲ ସେନା ହାହାକାର ଡାକ ପକାଇଲେ । ଆସଫ ଖାଁ ପ୍ରାଣ ନେଇ ପଳାଇଲେ । ଦୁର୍ଗାବତୀ ତାଙ୍କ ପଛେ ପଛେ ଗୋଡ଼ାଇଲେ । ଏହା ମଧ୍ୟରେ ରାତି ଆସି ... ।

ଦୁର୍ଗାବତୀଙ୍କର ସୈନ୍ୟମାନେ ଆଉ ଗୋଡ଼ାଇବାକୁ ରାଜି ହେଲେ ନାହିଁ । ସେମାନେ ସଂଖ୍ୟାରେ ଅଳ୍ପ ଥିଲେ ଏବଂ ଅପେକ୍ଷାକୃତ ଅଧିକ ସଂଖ୍ୟକ ସୈନ୍ୟଙ୍କ ସଙ୍ଗେ ଲଢ଼ି ଥକି ପଡ଼ିଥିଲେ । ରାତିରେ ବିଶ୍ରାମ କରିବାକୁ ସେମାନେ ଦୁର୍ଗାବତୀଙ୍କୁ ପ୍ରାର୍ଥନା କଲେ ।

ଦୁର୍ଗାବତୀ ମନେ ମନେ ସ୍ଥିରକଲେ, କିଛିକାଳ ବିଶ୍ରାମ ନେଇ ରାତିରେ ପୁଣି ମୋଗଲ ଶିବିର ଆକ୍ରମଣ କରିବେ, ମୋଗଲ ସେନାକୁ ରାଜ୍ୟ ସୀମାରୁ ତଡ଼ି ଦେବେ କିମ୍ବା ଶତ୍ରୁକୁ ସମ୍ପୂର୍ଣ୍ଣରୂପେ ଧ୍ୱଂସକରି ଦେବେ ; କିନ୍ତୁ ତାଙ୍କର ଏହି ପ୍ରସ୍ତାବରେ ସୈନ୍ୟମାନେ ରାଜି ହେଲେ ନାହିଁ । ବାଧ୍ୟହୋଇ ଦୁର୍ଗାବତୀ ନିଜ ଶିବିରକୁ ଫେରିଗଲେ ।

ଦୁର୍ଗାବତୀ ଶିବିରକୁ ଫେରି ଯାଇଥିବା ଶୁଣି ଆସଫ୍ ଖାଁ ଭାରି ଖୁସିରେ ନିଶ୍ୱାସ ମାରିଲେ । ପ୍ରଭାତ ନ ହେଉଣୁ ଗୋଟିଏ ପାହାଡ଼ ଉପରେ କମାଣ ମାନ ବସାଇଲେ ଏବଂ ଯୁଦ୍ଧ ପାଇଁ ପ୍ରସ୍ତୁତ ରହିଲେ ।

ଦୁର୍ଗାବତୀ ପୂର୍ବଦିନ ପରି ହାତୀ ପିଠିରେ ବସି ଯୁଦ୍ଧକୁ ଗଲେ । ତାଙ୍କ ସାଙ୍ଗେ ବୀରପୁତ୍ର ବୀରନାରାୟଣ ମଧ୍ୟ ଥିଲେ ।

ବାରନାବସ୍ତୁଣ ଡଗଥର ମୋଗଲ୍ ସେନାକୁ ଆକ୍ରମଣକରି ସେମାନଙ୍କୁ ପଛକୁ ହଟାଇ ଦେଲେ । ନଅଘଣ୍ଟା ଯୁଦ୍ଧ ହେଲା ।

ଏହି ସମୟରେ ବାରନାବସ୍ତୁଣ ମୋଗଲର ଅସ୍ତ୍ରରେ ସାଂଘାତିକ ଭାବେ ଆହତ ହୋଇ ତଳେ ପଡ଼ିଗଲେ । ତାଙ୍କ ସୈନିକମାନେ ଏଥିରେ ହତୋତ୍ସାହ ହୋଇ କେତେକ ପଳାୟନ କଲେ । ଆସଫ ଖାଁ ମନେକଲେ ତାଙ୍କର ସୁଯୋଗ ଆସିଗଲା । କେଉଁଆଡ଼ୁ ଗୋଟିଏ ଶର ଆସି ଦୁର୍ଗାବତୀଙ୍କର ଚକ୍ଷୁରେ ଫୁଟିଗଲା । ଦୁର୍ଗାବତୀ ଶରକୁ ଜୋରକରି ଟାଣି ଆଣିଲେ; କିନ୍ତୁ ତାହାର ମୁନଟି ଭାଙ୍ଗିଯାଇ ଆଖି ଭିତରେ ରହିଗଲା । ତଥାପି ସେ ଯୁଦ୍ଧ କରିବାକୁ ଲାଗିଲେ । ଆଉ ଗୋଟିଏ ଶର ଆସି ତାଙ୍କ ବେକରେ ବସିଗଲା । ଏହାକୁ ମଧ୍ୟ ସେ ଉପାଡ଼ି ପକାଇଲେ । ମୋଗଲମାନେ ପୁଣି ଦୁଇଟି ଶର ମାରିଲେ । ଦୁର୍ଗାବତୀଙ୍କର ହୋସ ରହିଲା ନାହିଁ । ଅଧରସିଂହ ନାମରେ ତାଙ୍କର ଜଣେ ବିଶ୍ବସ୍ତ କର୍ମଚାରୀ ଯୁଦ୍ଧକ୍ଷେତ୍ରରୁ ପଳାଇଯିବା ନିମନ୍ତେ ଅନୁରୋଧ କଲା । ଦୁର୍ଗାବତୀ ଶତ୍ରୁ ସମକ୍ଷରୁ ପଳାଇଯାଇ ଜୀବନରକ୍ଷା କରିବାକୁ ରାଜି ହେଲେ ନାହିଁ ।

ଦୁର୍ଗାବତୀ ବୁଝିଲେ ଯେ ଯୁଦ୍ଧରେ ହାରିଗଲେ । ତେବେ ଯାହା ହେଉ ଯୁଦ୍ଧ କ୍ଷେତ୍ରରୁ ପଳାଇ ଯିବେ ନାହିଁ । ଫଳ ହେବ ଯେ ସେ ଶତ୍ରୁ ହାତରେ ବନ୍ଦୀ ହେବେ । ଶତ୍ରୁ ହାତରେ ବନ୍ଦୀ ହେବାକୁ ସେ ଘୃଣା କରୁଥିଲେ । ସେଥିରେ ତାଙ୍କର ଇଜ୍ଜତରେ ବାଧା ଆସିବ । ତେଣୁ ସେ ନିଜ ଖଣ୍ଡା ନିଜ ଛାତିରେ ବସାଇ ଦେଇ ମୃତ୍ୟୁ ବରଣ କଲେ । ସେତେବେଳେ ଯୁଦ୍ଧ କ୍ଷେତ୍ରରେ ତାଙ୍କର ଯେଉଁ ଅଳ୍ପ ସଂଖ୍ୟକ ସୈନିକ ଥିଲେ । ସେମାନେ ରାଣୀଙ୍କର ଦୃଷ୍ଟାନ୍ତ ଓ ସାହାସରେ ଅନୁପ୍ରାଣିତ ହେଲେ ଏବଂ ଯୁଦ୍ଧ କ୍ଷେତ୍ରରେ ବହୁ ଶତ୍ରୁ ବଧ କରି ନିଜେ ଶତ୍ରୁ ହାତରେ ନିହତ ହେଲେ ।

ଦୁର୍ଗାବତୀଙ୍କ ପାଖରୁ କଥା ସବୁ ଅତି ଉତ୍ସାହରେ ଶୁଣୁଥିବେ । ଏପରି ବୀରରମଣୀ ଭାରତର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ରତ୍ନ ।

—o—

# ଉଭୟ ଭାରତୀ

ପୂର୍ବ କାଳରେ ନର୍ମଦା ନଦୀ କୂଳରେ ଚେଦୀ ରାଜ୍ୟର ରାଜଧାନୀ ମାହିଷ୍ମତୀ ଏକ ବିଖ୍ୟାତ ନଗରୀ ଥିଲା । ସେଠାରେ ମଣ୍ଡନ ମିଶ୍ର ନାମରେ ଜଣେ ଅତି ବଡ଼ ପଣ୍ଡିତ ଥିଲେ ।

ସେତେବେଳେ ଭାରତର ଲୋକମାନେ ଅଧିକ ସଂଖ୍ୟାରେ ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ । ବୌଦ୍ଧ ଧର୍ମ ହିନ୍ଦୁ ଧର୍ମର ଏକ ଶାଖା ବା ସଂସ୍କାର ; କିନ୍ତୁ ବୌଦ୍ଧମାନେ ବେଦ ମାନନ୍ତି ନାହିଁ । କିମ୍ବା ସମାଜରେ ବ୍ରାହ୍ମଣ ଶ୍ରେଷ୍ଠ ବୋଲି ମାନନ୍ତି ନାହିଁ । ବୌଦ୍ଧଧର୍ମ ବୁଦ୍ଧଦେବ ପ୍ରଚାର କରିଥିଲେ । ସେ ଈଶ୍ୱରଙ୍କ ବିଷୟରେ କିଛି ନ କହି ନୀରବ ରହୁଥିଲେ । ଥରେ ତାଙ୍କର ଜଣେ ଶିଷ୍ୟ ତାଙ୍କୁ ଈଶ୍ୱରଙ୍କ ସମ୍ବନ୍ଧରେ ପଚାରି ଥିଲା । ସେ ଈଶ୍ୱର ଥିବା ନ ଥିବା ସମ୍ବନ୍ଧରେ କୌଣସି ଉତ୍ତର ଦେଇ ନ ଥିଲେ । ମୋଟ ଉପରେ ବୌଦ୍ଧଧର୍ମ ଶୂନ୍ୟବାଦ ପ୍ରଚାର କରେ ଏବଂ କହେ ଯେ ପବିତ୍ର ଜୀବନ ଯାପନ କଲେ, ମନୁଷ୍ୟ ମୁକ୍ତି ପାଏ । ମୁକ୍ତି ପାଇଁ ଈଶ୍ୱରଙ୍କର ପୂଜା ବା ଈଶ୍ୱର ସମ୍ବନ୍ଧୀୟ ଜ୍ଞାନ ଆବଶ୍ୟକ ନୁହେଁ ।

ବୌଦ୍ଧ ଧର୍ମକୁ ଛାଡ଼ି ଦେଲେ, ସେତେବେଳେ ଶୈବ, ଶାକ୍ତ, ଗାଣପତ୍ୟ ପ୍ରଭୃତି ଅନେକ ଉପଧର୍ମ ପ୍ରବଳ ହୋଇ ଉଠିଥିଲା ।

ଏହି ଧର୍ମମାନ ମାନୁଥିବା ଲୋକେ ନିଜ ନିଜ ଭିତରେ କଳି କରୁଥିଲେ ।

ମହାତ୍ମା ଶଙ୍କରାଚାର୍ଯ୍ୟ ଦାକ୍ଷିଣାତ୍ୟରେ କେରଳ ଦେଶରେ ଜନ୍ମ ଗ୍ରହଣ କରିଥିଲେ । ସେ ବେଦ, ବେଦାନ୍ତ, ଦର୍ଶନ ଉପନିଷଦରେ ଜଣେ ଶ୍ରେଷ୍ଠ ପଣ୍ଡିତ ଥିଲେ ।

ସେ କହୁଥିଲେ ଜଗତରେ ଏକ ଈଶ୍ୱର ବା ବ୍ରହ୍ମ ପୂରି ରହିଛନ୍ତି । ଜୀବ ମାନେ ସେହି ବ୍ରହ୍ମର ଏକ ଅଙ୍ଗ । ଜଗତ ମଧ୍ୟ ତାହାଙ୍କର ଅଙ୍ଗ ଜୀବ ବ୍ରହ୍ମନ୍ତ ଆସେ ବ୍ରହ୍ମରେ ଲୀନ ହୁଏ । ଏ ଜ୍ଞାନ ଉଦୟ ହେଲେ, ଜୀବର ମୁକ୍ତି ହୁଏ । ଅର୍ଥାତ ଜୀବର ପୂନର୍ଜନ୍ମ ହୁଏ ନାହିଁ । ଏହି ମତକୁ ଅଦ୍ୱୈତ ବାଦ କହନ୍ତି ।

ଶଙ୍କରାଚାର୍ଯ୍ୟ, ବୌଦ୍ଧ, ଶୈବ୍ୟ ପ୍ରଭୃତି ସବୁ ମତକୁ ଖଣ୍ଡନ କରି ଭାରତରେ ଅଦ୍ୱୈତ ବାଦ ପ୍ରତିଷ୍ଠା କରିବା ପାଇଁ ପ୍ରଚାର କରୁଥିଲେ । ତାଙ୍କ ପ୍ରଚାର ଫଳରେ ବୌଦ୍ଧଧର୍ମ ଭାରତରୁ ଲୋପ ପାଇଥିଲା । ବୌଦ୍ଧ ପଣ୍ଡିତମାନେ ଯୁକ୍ତିରେ ତାଙ୍କୁ ନ ପାରି ଆତ୍ମହତ୍ୟା କରିଥିଲେ ।

ମାହିଷ୍ମତୀରେ ବିଖ୍ୟାତ ପଣ୍ଡିତ ମଣ୍ଡନ ମିଶ୍ରଙ୍କୁ ଯୁକ୍ତିରେ ହରାଇବା ପାଇଁ ଶଙ୍କର ସେଠାକୁ ଗଲେ । ବାଟରେ ନର୍ମଦାନଦୀରେ ଗାଧୋଇଲେ । ମଣ୍ଡନ ମିଶ୍ରଙ୍କ ଦାସୀ ନର୍ମଦାକୁ ଜଳ ନେବାକୁ ଆସିଥିଲା ଶଙ୍କର ତାଙ୍କୁ ମଣ୍ଡନ ମିଶ୍ରଙ୍କଘର କେଉଁଠି ବୋଲି ପଚାରିଲେ । ଦାସୀ ଉତ୍ତର ଦେଲା, "ଗୋସେଇଁ, ତାଙ୍କ ଘର ଠଉରେଇବା ବଡ଼ ନୁହେଁ । ମିଶ୍ରଙ୍କୁ ଅନେକ ଶିଷ୍ୟ ବେଢ଼ି ବସି ଥାଆନ୍ତି । ସେଠି ଏତେ ବିଦ୍ୟାଚର୍ଚ୍ଚା ହୁଏ ଯେ ତାଙ୍କ ଘରର ଶୁଆ ମଧ୍ୟ ବେଦ ଆବୃତ୍ତି

ଚଳୁଥାଏ । ସେଇଠାରେ ଏହି ସବୁ ଦେଖିବେ ତାକୁଇ ମଣ୍ଡନ ମିଶ୍ରଙ୍କ ଘର ବୋଲି ଜାଣିବେ ।"

ମଣ୍ଡନ ମିଶ୍ର ଶଙ୍କରଙ୍କ ସଙ୍ଗେ ଯୁକ୍ତି ତର୍କ କରିବେ ବୋଲି ରାଜି ହେଲେ । ଅନେକ ବଡ଼ ବଡ଼ ପଣ୍ଡିତ ଯୁକ୍ତି ଶୁଣିବା ପାଇଁ ରୁଣ୍ଡ ହୋଇ ଗଲେ । କେବେ ଜୟ ପରାଜୟ ବାଛିବ କିଏ ? ଏହି କଥା ଭାବି ଦୁହେଁ ବ୍ୟସ୍ତ ହୋଇ ପଡ଼ିଲେ । ଏତେ ବଡ଼ ବିଚକ୍ଷଣ ପଣ୍ଡିତ, ତାଙ୍କଠାରୁ ବେଶୀ ଯିଏ ଜାଣିଥିବ, ସେଇ ସିନା ବିଚାରକ ହେବ । ଭାବି ଭାବି ଶେଷରେ ଦୁହେଁ ସ୍ଥିର କଲେ । ମଣ୍ଡନ ମିଶ୍ରଙ୍କ ଭାର୍ଯ୍ୟା ଉଭୟ ଭାରତୀଙ୍କ ଛଡ଼ା ଏଥି ପାଇଁ ଅନ୍ୟ କେହି ଯୋଗ୍ୟ ନୁହେଁ ।

ବେଦ, ବେଦାନ୍ତ, ଦର୍ଶନ, ଉପନିଷଦର ବହୁତ କଥାରେ ଯୁକ୍ତି ହେଲା । ସତର ଦିନ ପର୍ଯ୍ୟନ୍ତ ଯୁକ୍ତି ତର୍କ ହେବା ପରେ ଉଭୟ ଭାରତୀ ଶଙ୍କର ଜିତିଲେ ବୋଲି ଘୋଷଣା କଲେ ।

ଶଙ୍କରଙ୍କ ପରି ବିଦ୍ୱାନ ଓ ଜ୍ଞାନୀ ସାରା ଭାରତରେ ନ ଥିଲେ । ଭାରତର କେହି ଜଣେ ସୁଦ୍ଧା ତାଙ୍କ ଜ୍ଞାନର ସମକକ୍ଷ ନଥିଲେ । ସେ ବର୍ତ୍ତମାନ ଦେଖିଲେ, ଯେଉଁ ମଣ୍ଡନ ମିଶ୍ର ତାଙ୍କ ସାଙ୍ଗେ ସତର ଦିନ ତାଳ ବିଦ୍ୟାରେ ଲଢ଼ିଲେ, ତାଙ୍କ ଅପେକ୍ଷା ତାଙ୍କ ଭାର୍ଯ୍ୟା ଉଭୟ ଭାରତୀ ବିଦ୍ୟା ଜ୍ଞାନରେ ବଡ଼ । ତାଙ୍କୁ ଯଦି ସେ ବିଦ୍ୟାରେ ନ ହରାଇବେ ତେବେ ତାଙ୍କର ଆଉ ମହତ୍ତ୍ୱ ବଢ଼ିବ କଣ ? ଉଭୟ ଭାରତୀ ମନେ କଲେ, 'ମୋ ପତିଙ୍କୁ ଯୁକ୍ତିରେ ହରାଇ ଶଙ୍କର ଏଠାରୁ ଯିବେ କିପରି ? ସେ ମୋତେ ହରାନ୍ତୁ ।" ପୁଣି ସତରଦିନ ବିବାଦ ଚାଲିଲା । ସହରର ପଣ୍ଡିତ ମାନେ ଆଶ୍ଚର୍ଯ୍ୟ ହେଲେ । କେହି କାହାରିକୁ ହରାଇ ପାରିଲେ ନାହିଁ । ଦୁହେଁ ସମାନ ହେଲେ । ଉଭୟ ଭାରତୀ ବୁଝି ପାରିଲେ ଶଙ୍କରଙ୍କୁ ବିଦ୍ୟା ଶାସ୍ତ୍ରରେ ପାରି ହେବ ନାହିଁ । ତେଣୁ

ସେ ଉତ୍ତର ଠିକ୍ କଲେ, ତାଙ୍କୁ କାମ ଶାସ୍ତ୍ର କଥା ପଚାରିଲେ । ସେହି ପ୍ରଶ୍ନର ଉତ୍ତର ଶଙ୍କର ଦେଇ ପାରିଲେ ନାହିଁ । ସେତେ ଅଳ୍ପ ବ୍ରହ୍ମଚାରୀ, କାମଶାସ୍ତ୍ର ଜାଣି ନ ଥିଲେ ।

ଶଙ୍କର କାମ ଶାସ୍ତ୍ରର ଉତ୍ତର ନିମନ୍ତେ ମାସେ ସମୟ ମାଗିଲେ । ଯୋଗ ବଳରେ ନିଜ ଶରୀର ତ୍ୟାଗ କରି ଜଣେ ମୃତ ରାଜାଙ୍କ ଶରୀରରେ ପ୍ରବେଶ କରି ପୂର୍ବ ପରି ରାଜ୍ୟ ଚଳାଇଲେ । ସେହି ରାଜାଙ୍କ ଶରୀରରେ କିଛି ଦିନ ରହି କାମଶାସ୍ତ୍ରରେ ଜ୍ଞାନ ଅର୍ଜ୍ଜନ କରି ପୁଣି ନିଜ ଶରୀରକୁ ଫେରି ଆସିଲେ ।

ତା ପରେ ଶଙ୍କର ପୁଣି ମଣ୍ଡନଙ୍କୁ ସଙ୍ଗେ ଓ ଉଭୟଭାରତୀଙ୍କୁ ତର୍କରେ ହରାଇଲେ । ପୂର୍ବ କାଳରେ ଭାରତରେ ଏପରି ବିଦୁଷୀ ଥିଲେ, ଯିଏ ବିଶ୍ୱ ବିଖ୍ୟାତ ପଣ୍ଡିତ ଶଙ୍କରାଚାର୍ଯ୍ୟଙ୍କ ସଙ୍ଗେ ବିଦ୍ୟାରେ ସମକକ୍ଷ ଥିଲେ ।

---

# ଚାନ୍ଦବିବି

ଆକବର ଦିଲ୍ଲୀର ମୋଗଲ ସମ୍ରାଟ ଥିବା ବେଳେ ଦାକ୍ଷିଣାତ୍ୟରେ ଅହମ୍ମଦ ନଗର ଓ ବିଜାପୁର ଦୁଇଟି ମୁସଲମାନ ରାଜ୍ୟ ଥିଲା । ଆହମ୍ମଦ ନଗର ସୁଲତାନଙ୍କ ଝିଅ ଚାନ୍ଦବିବି ବିଜାପୁର ସୁଲତାନଙ୍କୁ ବିଭା ହୋଇଥିଲେ ; କିନ୍ତୁ ସେ ବିଧବା ହୋଇ ଯିବାରୁ ବାପଘରକୁ ଆସି ସେଠାରେ ରହୁଥିଲେ । ସେତେବେଳେ ତାଙ୍କର ଭାଇ ଆହମ୍ମଦ ନଗରର ସୁଲତାନ ହୋଇଥିଲେ ।

ଚାନ୍ଦବିବିଙ୍କ ଭାଇ ଅହମ୍ମଦ ନଗରର ସୁଲତାନ ମଧ୍ୟ ମରିଗଲେ । ତାଙ୍କର ଶିଶୁ ପୁତ୍ର ସିଂହାସନରେ ବସିଲେ । ଶିଶୁ ରାଜାଙ୍କ ପକ୍ଷରୁ ଚାନ୍ଦବିବି ସୁନ୍ଦର ରୂପେ ରାଜକାର୍ଯ୍ୟ ଚଳାଇଲେ ।

ଚାନ୍ଦବିବି ଏକ ଚତୁର ସ୍ତ୍ରୀ ଥିଲେ । ସେ ଭଲ ରୂପେ ଯୁଦ୍ଧ କରି ପାରୁଥିଲେ । ଯୁଦ୍ଧରେ ଘୋଡ଼ା ଚଢ଼ି ସେନାପତି କାମ ତୁଲାଇ



ଚାନ୍ଦବିବି

ପାରୁଥିଲେ । ଘୋଡ଼ା ପିଠିରେ ବସି ମୃଗୟା କରୁଥିଲେ । ସେ ଆରବୀ, ପାର୍ସୀ, ତୁର୍କୀ, ମରହଟ୍ଟୀ ଓ କାନାଡ଼ୀ ଏହିପରି ପାଞ୍ଚଟି ଭାଷା ଜାଣି ଥିଲେ । ସେହି ଭାଷାମାନଙ୍କରେ ଭଲ ରୂପେ କଥାବାର୍ତ୍ତା କରି ପାରୁଥିଲେ । ସେ ସୁନ୍ଦର ଛବି ଅଙ୍କି ପାରୁଥିଲେ ଓ ସୀତାର ବଜାଇ ଭଲ ସଙ୍ଗୀତ ବୋଲି ପାରୁଥିଲେ ।

ଚାନ୍ଦବିବିଙ୍କ ଶାସନରେ ରାଜ୍ୟର ବହୁତ ଉନ୍ନତି ହେଲା ; କିନ୍ତୁ ସେତେବେଳେ ତାଙ୍କ ଦରବାରରେ ଦୁଇଟି ଦଳ ଥିଲେ । ଗୋଟିଏ ଦଳ ଚାନ୍ଦବିବିଙ୍କୁ ଭଲ କହୁଥିଲେ ତ ଅନ୍ୟ ଦଳଟି ତାଙ୍କ ବିପକ୍ଷରେ ରହିଲେ । ଚାନ୍ଦବିବିଙ୍କ ବିପକ୍ଷ ଦଳ କହିଲେ, ଜଣେ ସ୍ତ୍ରୀ

ସେକର ହୁକୁମ ମାନ ଆମେ ଚଳି ପାରିବୁ ନାହିଁ । ସେମାନେ ରାଜ୍ୟରେ ଗୋଳମାଳ କଲେ ।

ଦିଲ୍ଲୀର ସମ୍ରାଟ ଆକବର ଏପରି ସୁଯୋଗ ଖୋଜୁଥିଲେ । ଆହମ୍ମଦ ନଗରରେ ଗୋଳମାଳ ହେବେ ଓ ସେଠାରେ ଦୁର୍ବଳ ହେଲେ ତାଙ୍କୁ ସେହି ରାଜ୍ୟ ଜିଣି ନେବାକୁ ସୁବିଧା ହେବ । ସେ ଆହମ୍ମଦ ନଗର ଉପରେ ଆକ୍ରମଣ କଲେ ।

ମୋଗଲ ସୈନ୍ୟମାନଙ୍କ ଆକ୍ରମଣରେ ଚାନ୍ଦବିବି ଆଦୌ ଡରିଲେ ନାହିଁ । ତାଙ୍କ ଦେହରେ ଯେତିକି ବଳ ମନରେ ସେତିକି ସାହାସ ଥିଲା । ସେ ପୁରୁଷ ବେଶରେ ଘୋଡ଼ା ଚଢ଼ି ଦିନ ରାତି ଜଗି ଦୁର୍ଗ ରକ୍ଷା କଲେ । ସୈନ୍ୟ, ଗୋଳାବାରୁଦ, ଅସ୍ତ୍ର ଶସ୍ତ୍ର ଯେଉଁଠି ଯାହା ରଖିବା କଥା ସଜାଇ ରଖିଲେ । ସୈନ୍ୟ ମାନଙ୍କୁ ସେମାନଙ୍କର କର୍ତ୍ତବ୍ୟ ବିଷୟରେ ବୁଝି ବୁଝି ଉପଦେଶ ଦେଲେ ।

ମୋଗଲ ମାନେ ଅନେକ ଦିନ ପର୍ଯ୍ୟନ୍ତ ଦୁର୍ଗ ଘେରି ରହିଲେ । ଚାନ୍ଦବିବିଙ୍କ ସୈନ୍ୟମାନେ ଦୁର୍ଗର ଗମ୍ବୁଜ ଉପରୁ ତୋପ ଚଳାଇ ସେମାନଙ୍କୁ ଆଘାତ କରୁଥାଆନ୍ତି ନ ହେଲେ ଦୂରକୁ ତଡ଼ି ଦେଉଥାଆନ୍ତି । ମୋଗଲମାନେ ତଳୁ ତୋପ ଚଳାଇ ଚାନ୍ଦବିବିଙ୍କ ସୈନ୍ୟ ମାନଙ୍କୁ ମାରୁଥାଆନ୍ତି । ଦୁର୍ଗର ପାଚେରୀକୁ ଭାଙ୍ଗିବାର ଚେଷ୍ଟା କରୁଥାଆନ୍ତି । ଦୁର୍ଗପାଚେରୀ ବହୁତ ଟାଣ ଓ ଉଚ୍ଚ ଥିଲା । ତେଣୁ ମୋଗଲମାନେ ଦୁର୍ଗର କିଛି କ୍ଷତି କରି ପାରୁ ନ ଥାନ୍ତି ।

ଆକବରଙ୍କ ସୈନ୍ୟମାନେ ଏପରି ବହୁତ ଦିନ ଯାଏଁ ଚେଷ୍ଟା କଲେ । ଶେଷରେ ସେମାନେ ପାଚେରୀ ତଳେ ଲେଉଟିଥି ଗାତ ଖୋଳି ସେଥିରେ ବାରୁଦ ଭର୍ତ୍ତି କରି ଦୁର୍ଗପାଚେରୀ ଭାଙ୍ଗି ଦେବାକୁ ଚେଷ୍ଟା କଲେ । ଚାନ୍ଦବିବି ଏତେ ସଜାଗ ଥାଆନ୍ତି ଯେ ସେମାନେ ବାରୁଦ

ଫୁଟିବା ମାତ୍ରେ ଭିତରପଟୁ ଫୋଡ଼ କରି ବାରୁଦ ଠୁଳ କରି ଯାଆନ୍ତି । ପୁଣି ଫୋଡ଼ଗୁଡ଼ିକ ମରାମତି କରି ଦିଅନ୍ତି ।

ଭୂଲ କ୍ରମେ ଗୁରୁଦତ୍ତଙ୍କ ସୈନିକମାନେ ଗୋଟିଏ ଗାତର ବାରୁଦ ପରିଷ୍କାର କରିପାରି ନ ଥିଲେ । ମୋଗଲମାନେ ତାହା ଜାଣି ପାରିଲେ ଓ ତରତର ହୋଇ ସେଥିରେ ନିଆଁ ଲଗାଇଲେ । ଫାଟେଣ୍ଠା ସେ ସ୍ଥାନରେ ଫାଟି ଗୋଟାଏ ବଡ଼ ଫୋଡ଼ ହୋଇଗଲା ।

ଗୁରୁଦତ୍ତ ତଥାପି ଡରିଲେ ନାହିଁ କି ସାହସ ହରେଇଲେ ନାହିଁ । ସେ ବୁଝିଲେ ମୋଗଲମାନେ ସେହି ଫୋଡ଼ ବାଟେ ଦୁର୍ଗ ଭିତରକୁ ଜଣ ଜଣ ହୋଇ ପଶିବେ । ସେ ନିଜେ ଫୋଡ଼ ବାଟ ପାଖରେ ଜଗି ବସିଲେ । ସୈନିକମାନଙ୍କୁ ସେଠି ଜମା କଲେ । ମୋଗଲ ସୈନିକମାନେ ମୁଣ୍ଡ ପଶାଇବା ମାତ୍ରେ ହାଣି ଦେବାକୁ ଆଦେଶ ଦେଲେ । ଅନେକ ମୋଗଲ ପ୍ରାଣ ଖୋଇଲେ ଦୁର୍ଗ ଭିତରକୁ ପଶି ପାରିଲେ ନାହିଁ ।

ଏଣେ ଗୁରୁଦତ୍ତ ଫାଟର ମରାମତିକାମ ମଧ୍ୟ ଚଳାଇ ଥାଆନ୍ତି । ଶେଷରେ ଫାଟଟି ପୁଣି ମରାମତି ହୋଇଗଲା । ମୋଗଲ ସେନାପତି ଆକବରଙ୍କ ପୁଅ ମୁରାଦ ଶେଷରେ ହାରି ମାନିଲେ । ଦୁର୍ଗ ଦଖଲ କରି ପାରିଲେ ନାହିଁ କି ଗୁରୁଦତ୍ତଙ୍କୁ ଜିଣି ପାରିଲେ ନାହିଁ ।

ମୁରାଦ ସନ୍ଧି କଲେ । ନିଜର ବୋଲି କେତେଟି ପ୍ରଦେଶ ପାଇଲେ, ଆଉ ଯୁଦ୍ଧ କରିବେ ନାହିଁ ବୋଲି ସ୍ୱୀକାର କଲେ । ଗୁରୁଦତ୍ତଙ୍କ ସାହାସ ପାଖରେ ଏଡ଼େ ବଡ଼ ସମ୍ରାଟ ଆକବର ହାରି ମାନିଲେ ।

ଗୁରୁଦତ୍ତ ଜଣେ ସ୍ତ୍ରୀ ହେଲେ କଣ ହେବ ? ବୀର ପୁରୁଷମାନେ ମଧ୍ୟ ତାଙ୍କ ପରି ସାହସ ଦେଖାଇ ପାରିବେ ନାହିଁ ।

—୦—